ଭାବୁଛି ଲେଖିବି ବୋଲି

ତମ ପାଇଁ ଦୁଇପଦ

ପାଉ ନାହିଁ ଶବ୍ଦ ଆଜି

ବାନ୍ଧିବାକୁ ପଦ

କ୍ଷମା କରିବ ଯଦି ଭୁଲ ଥାଏ ଆମର

ଦେଇ ଆମକୁ କରୁଣା ଆଶିଷ।

# ଅକୁହା କଥା

ବାସନ୍ତୀ ପଟ୍ଟନାୟକ





# ମେନ ମାଉସୀ

ବେଳ ଅବେଳରେ ମୋର ଗାଁ କଥା ମନେ ପଡ଼ିଲେ ସବୁଠୁ ଆଗ ମେନ ମାଉସୀ କଥା ମନେ ପଡ଼ିଯାଏ । ତାଙ୍କ ଘର ଆମ ଗାଁ ଦାଣ୍ଡ ମଝି ଉଲାଙ୍ଗ ଦାଣ୍ଡରେ । ଦୁଇ ବଖୁରିଆ ପକ୍କା ଘର । ଉଚ୍ଚ ପିଣ୍ଡା, ପକ୍କା ବାରଣ୍ଡା । ଗୋଟିଏ ବଖରା ରାଧାମାଧବଙ୍କ ଘର । ଅନ୍ୟଟିରେ ସ୍ୱାମୀ ଅନାଦି ଦୀକ୍ଷିତ ଓ ସ୍ତ୍ରୀ ମେନ ମାଉସୀ । ମେନ ମାଉସୀ ପ୍ରାୟ ପାଞ୍ଚଫୁଟ ଉଚ୍ଚତାର ଗୋରା ତକ ତକ ମୋଟା ସୋଟା ସ୍ତ୍ରୀଲୋକଟିଏ । ମୁଣ୍ଡରେ ସୁଉକି ସାଇଜର ସିନ୍ଦୁରଟିପା । ପାଟିରେ କେତକୀ ଖଇର ପକା ଖଣ୍ଡେ ଗୁଣ୍ଡି ପାନ । ପାନ ବୋଳ ଲାଗି ଓଠ ଦୁଇଟି ସବୁବେଳେ ନାଲି ଟୁକୁଟୁକୁ । ନାଲି ଫୁଲ ପକା ଧୋବ ଶାଢ଼ି ଖଣ୍ଡକ ତା ଗୋରା ଦେହକୁ ଭାରି ସୁନ୍ଦର ମାନେ ।

ତା ସ୍ୱାମୀ ଅନାଦି ଦିକ୍ଷୀତ୍ ଆମ ଗାଁର ଅଧିକାଂଶ ଘରେ ଠାକୁରଙ୍କ ପୁରୋହିତ କାମ କରନ୍ତି । ଆମେ ଘର ମଦନ ମୋହନଙ୍କର ଖାସ୍ ପୁରୋହିତ ସିଏ । ଠାକୁର ପୂଜା ଛଡ଼ା ତାଙ୍କର ଅନ୍ନ ଭୋଜନ ଦୁଇଓଳି ରାନ୍ଧନ୍ତି । ତାଙ୍କ ପାଉଣା ବାବଦକୁ ଅଧାରୁ ଅଧିକ ଭୋଗାନ୍ନ ମିଳେ । ତା ଛଡ଼ା ଅଳ୍ପକିଛି ଟଙ୍କା ତାଙ୍କୁ ଦିଆଯିବାର ମୁଁ ଶୁଣିଛି ।

ଭୋଗ ପ୍ରସାଦ ଯାହା ସେ ପାଆନ୍ତି ସେଥିରେ ସ୍ୱାମୀ ସ୍ତ୍ରୀଙ୍କର ଖାଇବା ଚଳିଯାଏ । ରନ୍ଧାବଢ଼ା ତାଙ୍କ ଘରେ ପ୍ରାୟ ନଥାଏ । ତେଣୁ ମେନ ମାଉସୀ ହାତରେ ଅଖଣ୍ଡ ସମୟ । ଦିନଯାକ ସେ ଘରକୁ ଘର ବୁଲୁଥାଏ । ଗାଁ ଯାକର ଅଧିକାଂଶ ଘରର ଖବର ତାକୁ ଜଣା । କାହାପୁଅ ବାହା ହବ, କାହା ଝିଅ ପାଇଁ ବର ଖୋଜା ଚାଲିଛି । କାହା ବୋହୂର ପିଲା ହବ ଏମିତିକି କାହା ଘରେ ଶାଶୁ ବୋହୂ କଳି ହୁଅନ୍ତି ସବୁ ତାକୁ ଜଣା । ଦରକାରରେ କାହାକୁ କେମିତି ସାହାଯ୍ୟ ମଧ୍ୟ କରେ । କିନ୍ତୁ କାହିଁକି କେଜାଣି ଗାଁର ସ୍ତ୍ରୀ ଲୋକମାନେ ସମସ୍ତେ ତାକୁ ଡ଼ରନ୍ତି । ଘରର କିଛି କଥା ତାଠୁଁ ଲୁଚାଇ ରଖନ୍ତି । କିମ୍ୱା ଆଡ଼େଇ ହେଇ ରହନ୍ତି । ତାର ଟାଣ ଟାଣ କଥା ମୁହଁ ଛିଞ୍ଚିଡ଼ା ସ୍ୱଭାବ ସେମାନଙ୍କୁ ଭୟଭୀତ କରାଏ । କିଏ କେମିତି ପାନ ଖଣ୍ଡେ ଶ୍ରଦ୍ଧାରେ



ଯାଚିଲେ, ମେନ ମାଉସୀ କହେ-ମୋ କାନୀରେ ପରା ଦଶଖଣ୍ଡ ପାନ ବନ୍ଧା । ତମର ଏ ପାଣିଚିଆ ପାନ ମୋର କିଏ ଖାଇବ ? ଖଇର ନଥିବ କି ଗୁଜୁରାତି ଲବଙ୍ଗ ନଥିବ । ଚୂହା ପକା ଗୁଣ୍ଡି ତମର କ'ଣ ଅଛି ? ସେ ସବୁ ନଥିଲେ ମୁଁ କାହାଘରୁ ପାନ ଖାଏ ନାହିଁଲୋ ମାଆ । ପାଟି ଆମ୍ବିଳା ଲାଗିବ, ଶ୍ରଦ୍ଧା କିମ୍ବା ଅଶ୍ରଦ୍ଧାରେ ପାନ ଯାଚିଥିବା ସ୍ତ୍ରୀ ଲୋକଟି ପଛକୁ ବୁଲି ମୁହଁ ମୋଡ଼ିଦିଏ ।

ସେଇ ହେଉଛି ମେନ ମାଉସୀ । ଆମ ଗାଁକୁ ସେ ପନ୍ଦର ବର୍ଷରେ ବାହାହେଇ ଆସିଥିଲା । ଆମ ଗାଁଠାରୁ ତା ବାପଘର ମାତ୍ର ଦୁଇ ତିନି ମାଇଲ୍ ବାଟ । ମୋ ପିଲାଦିନୁ ମୁଁ ତାକୁ ଦେଖୁଛି । ଛୁଆପିଲା କିଛି ନାହିଁ କହିଲେ ଭୁଲ୍ ହେବ । ପ୍ରତି ବର୍ଷେ ଦୁଇ ବର୍ଷରେ ପାଞ୍ଚଟି ପିଲା ହେଇ ତାର ନଷ୍ଟ ହେଇଛନ୍ତି । ମୋ ଜାଣିବାରେ ତାର ଗୋଟିଏ ଝିଅ ସାତ ଆଠ ବର୍ଷ ଯାଏ ବଞ୍ଚିଥିଲା । ତାକୁ ସେ ମୋ ସହିତ ସଙ୍ଗାତ ମଧ୍ୟ ବସାଇଥିଲା । ମୁଁ ସେତେବେଳେ ଗାଁରେ ପ୍ରାୟ ରହୁଥିଲି । ତା ଝିଅ ତୁଳସୀ ସହିତ ବହୁ ବହୁକା ଖେଳିବା ମୋ ମନେ ଅଛି । ଦଶବର୍ଷ ବେଳକୁ ସେ ଝିଅଟି ସାପ କାମୁଡ଼ାରେ ମରିଗଲା । ମୁଁ କିନ୍ତୁ ସେତେବେଳକୁ ପାଠ ପଢ଼ିବାକୁ କଟକ ଚାଲି ଆସିଥିଲି । ତାପରେ ମେନା ମାଉସୀ ଖବର ଯାହା ଶୁଣିଛି ଦେଖିଛି ସେ ସବୁ ଯେତିକି କରୁଣ ତାଠୁ ସେତିକି ଭୟଙ୍କର ।

ମେନ ମାଉସୀ ସ୍ୱାମୀ ଅନାଦି ନିହାତି ସାଧାସିଧା ଶାନ୍ତ ପ୍ରକୃତିର ମଣିଷ । ମେନ ମାଉସୀର ସବୁ ଗୁଣ ଦୁର୍ଗୁଣକୁ ସେ ଆଗେଇ ଦିଏ । ଏତେ ଗୁଡ଼ା ପିଲା ନଷ୍ଟ ହେବାର ଦୁଃଖ ତାଙ୍କର ମଧ୍ୟ ଥିଲା, କିନ୍ତୁ ତାଙ୍କ ସ୍ତ୍ରୀ ପରି ସେ ଏତେଟା ଭାଙ୍ଗି ପଡ଼ିନଥିଲେ । ବୟସ ମଧ୍ୟ ଏମିତି କିଛି ବଳି ପଡ଼ିନଥିଲା । ମେନା ମାଉସୀକୁ ୩୦/୩୧ ବର୍ଷ । ଅନାଦି ନନାର ବୟସ ମଧ୍ୟ ଚାଳିଶ ବୟାଳିଶ ହବ । ସେ ସମୟରେ ବର କନ୍ୟାଙ୍କ ବୟସରେ ଆଠ ଦଶବର୍ଷ ତଫାତ୍ ବଡ଼ କଥା ନୁହେଁ । ବ୍ରାହ୍ମଣ ଘରେ ତ ଆହୁରି ବେଶୀ । ତୁଳସୀର ଦେହାନ୍ତ ପରେ ମେନ ମାଉସୀ ଏକପ୍ରକାର ପାଗଳ ପରି ହୋଇଗଲା । ଯାହାକୁ ଦେଖିଲେ କହେ ଜାଣିଛ ମୁଁ ସ୍ୱପ୍ନ ଦେଖିଛି ମୋର ଷଷ୍ଠ ଗର୍ଭରେ ମା' ତାରିଣୀ ଜନ୍ମ ନେବ । ଆମ ଠାକୁର ମତେ ସ୍ୱପ୍ନେଇଛନ୍ତି । ସେ ଜନ୍ମହେଲା ପରେ ତାଙ୍କ ପାଇଁ ଗୋଟେ ମନ୍ଦିର କରାଇବି । ସେଇ ମନ୍ଦିରରେ ସେ ପ୍ରତିଷ୍ଠିତ ହେବେ । ମେନ ମାଉସୀ କଥା ଶୁଣି ଗାଁ ସ୍ତ୍ରୀ ଲୋକେ ସବୁ କହିଲେ ସେ ପାଗଳୀ ହୋଇଗଲାଣି । ମେନ ମାଉସୀର ଦୁଃଖ କଷ୍ଟ ପ୍ରକୃତରେ ସେମାନେ ଅନୁଭବ କରପାରୁଥିଲେ । କିଛି ଲୋକ ଅନାଦୀ ଦିକ୍ଷୀତଙ୍କୁ ବୁଝାଇଲେ ଡ଼ାକ୍ତର ଦେଖାଇ ପରୀକ୍ଷା କରାଇବାକୁ । ଅନାଦି ଲୋକଙ୍କ ପରାମର୍ଶ ମାନି ରାଜି ହେଲେ । କିନ୍ତୁ ମେନ ମାଉସୀର ସେଇ ଏକାଜିଦ୍ ସେଇ ଏକା କଥା । ପୁଅ ଝିଅ ଯାହା ମୋର ହବ ହେଇସାରୁ ଲୋକେ ଦେଖିବେ ମୋ କଥା ବିଶ୍ୱାସ କରିବେ । ପୁଅ ତ ନୁହଁ ଝିଅ ମା ଦୁର୍ଗା । ଗୋବିନ୍ଦ ମୋତେ କ'ଣ ମିଛ କହିବେ ? ଆମେ ଦୁହେଁ ପରା ତାଙ୍କର ଶରଣ ପଶିଛୁ । ମନ୍ଦିର ପ୍ରତିଷ୍ଠା ହେଲେ ସମସ୍ତେ ତ ଦେଖିବ, ଆସିବ । ସେତେବେଳେ ଜାଣିବ ମୁଁ ସତ କି ମିଛ କହୁଛି ।



ଦିନ ଗଡ଼ିଚାଲିଲା । ସତକୁ ସତ ବର୍ଷେ ଦେଢ଼ ବର୍ଷ ପରେ ମେନ ମାଉସୀର ଗୋଟେ ଝିଅ ହେଲା । ଲୋକଙ୍କ ମନରେ ସନ୍ଦେହ ହେଲା । ମେନ ମାଉସୀ ସତରେ ସ୍ୱପ୍ନ ପାଇଥିଲା ବୋଧେ । ପିଲା ପେଟରେ ରହିବା ଦିନୁ ସେ ଘରୁ ବାହାରୁନଥିଲା । ପ୍ରାୟ ସାତ, ଆଠ ମାସ ପରେ ଜଣା ପଡ଼ିଲା । ଝିଅ ହେଲା, ମେନ ମାଉସୀ କିନ୍ତୁ ତା ଷଠୀ ଘର କି ଏକୋଇଶା କିଛି କଲାନାହିଁ । ଦିନରାତି ଝିଅକୁ ଧରି ଘର ଭିତରେ ପଶିଥାଏ । ସ୍ତ୍ରୀ ଲୋକଙ୍କ ଆଗ୍ରହ ଝିଅଟିକୁ ଦେଖିବାକୁ । କିଏ କେମିତି ଲୁଚିଛପି ଦେଖିଲେ । ଝିଅଟି ଗୋରା ତକତକ ତା ମାଆପରି । ଭାରି ସୁନ୍ଦର । ମୁଣ୍ଡରେ କୁଞ୍ଚୁ କୁଞ୍ଚିଆ ବାଳ ବଡ଼ ବଡ଼ ଆଖି । ବାହାରକୁ କାନ୍ଦଣା ଶୁଭିଲେ ଗାଁ ଲୋକେ ଜାଣନ୍ତି ଝିଅଟି ବଞ୍ଚିଛି । ସମସ୍ତେ କଲ୍ୟାଣ କରନ୍ତି ପିଲାଟି ବଞ୍ଚିରହୁ । ଯେତେରୋଗ ରୋଷ ଥିଲେ ମଧ ସବୁ ସ୍ତ୍ରୀଲୋକ ତାର କଷ୍ଟ ଦୁଃଖ ବୁଝନ୍ତି । ଗୋଟି ଗୋଟି କରି ଏତେଗୁଡ଼ିଏ ପିଲା ନଷ୍ଟ ତ ହେଲା ଯାହାର ସେ ତ ନିଶ୍ଚୟ ପାଗଳା ହବ ଏଥିରେ ଦୋଷ ଦେଇ ହବନି ତାକୁ । ଅନାଦୀ ନନାଙ୍କୁ ଦେଖିଲେ ଲୋକମାନେ ବୁଝିପାରନ୍ତି ତାଙ୍କ ମନରେ ମଧ ଆନନ୍ଦ ଉତ୍ସାହ ଆଗଠାରୁ ବଢ଼ିଯାଇଛି ।

ଚାରି ପାଞ୍ଚବର୍ଷ ପରେ ପିଲାଟି ବାହାରକୁ ବାହାରିବାର ଗାଁ ଲୋକେ ଦେଖିଲେ । ମେନ ମାଉସୀ ତାକୁ ଡ଼ାକୁଥାଏ ବାୟାଣୀ । ଆଖି ଆଗରୁ ଟିକେ ଆଢୁଆଳ ହେଲେ ସେ ବାୟାଣୀ ବାୟାଣୀ ଡ଼ାକ ଛାଡ଼େ କିମ୍ବା ଦାଣ୍ଡକୁ ବାହାରି ଆସି ତାକୁ କାଖକରି ନେଇଯାଏ । ସେଇ ଅଳ୍ପ ସମୟ ଭିତରେ ସ୍ତ୍ରୀ ଲୋକମାନେ ଦେଖନ୍ତି ବାୟାଣୀର ହାତ ବେକରେ କେତେ ପ୍ରକାର ତାବିଜ ଡ଼େଉଁରିଆ ଝୁଲୁଛି । କେହି କେହି ସ୍ତ୍ରୀ ଲୋକଙ୍କ କାନରେ କେତେ କଥା ପଡ଼ିଲା । ଖବରର ମୂଳସୂତ୍ର ହେଉଛି ସୁଳି । ସେ ମେନ ମାଉସୀର ଗୁହାଳ ସଫା କରେ । ମେନ ମାଉସୀର ଗାଈ ଗୋରୁଙ୍କ ପ୍ରତି ବଡ଼ ଲୋଭ । ଗୁହାଳରେ ଗାଈ ଓ ଦୁଇଟି ବାଛୁରୀର ସେ ବଡ଼ ଯତ୍ନ ନିଏ । ସବୁ କାମ ତାଙ୍କର ନିଜେ ନପାରିବାରୁ ଚାରିପାଞ୍ଚବର୍ଷ ହେଲା ସୁଳିକି ରଖିଛି । ସେ ଗୁହାଳ ସଫା କରେ । ଗାଈକୁ ଖାଇବାକୁ ଦିଏ । ଘସି ପାରେ । ତାଛଡ଼ା ଘର ଅଗଣା ଚାରିପଟ ଓଳାଓଳି କରେ । କାମ ସରିଲା ପରେ ମେନ ମାଉସୀ ତାକୁ ମୁଢ଼ି, ଚୁଡ଼ାଭଜା, ଖଇ ଉଖୁଡ଼ା କିମ୍ବା ବୁଟ ଛତୁଆ ଖାଇବାକୁ ଦିଏ । ସୁଳି ପୁଣି ଓପରି ଓଳି ଆସି ଗାଈ ଦୁହେଁ । ଗାଈଙ୍କୁ ଖାଇବାକୁ ଦେଲେ ଗୁହାଳରେ ଧୂଆଁ ଦିଏ ତା ପରେ ଯାଏ । ଦିନଯାକ ଘରେ ଏପଟ ସେପଟ ହେଉଥିବାରୁ ସୁଳି କାନରେ କିଛି କିଛି କଥା ପଡ଼େ । ହୁଏତ ଅସାବଧାନତାରେ ମେନ ମାଉସୀ ସୁଳି ଉପରେ ଏତେଟା ନଜର ଦେଇପାରି ନାହିଁ । କିମ୍ବା ସୁଳିର ଉପସ୍ଥିତି ସେ ଭୁଲିଯାଏ ।

ସେଇ ସୁଳି ଦିନେ ଗୋପୀ ବୋଉ ଆଗରେ କହିଲା - ଜାଣିଛ ଗୋପୀ ବୋଉ ତମର ମେନ ମାଉସୀ ଗୋଟେ ଜ୍ୟୋତିଷ ଡ଼କାଇ ଝିଅର ଜାତକ ତିଆରି କରାଉଥିଲେ । ଜ୍ୟୋତିଷ କହିଛି ଝିଅର ସବୁ ଭଲ କିନ୍ତୁ ବିଧବା ଯୋଗ ଅଛି । ହେତୁ ପାଇବା ଆଗରୁ ତାକୁ ବାହା



କରାଇ ଦେଲେ ତାର ସେ ରିଷ୍ଟ କଟିଯିବ । ତା ଝିଅର ଆସନ୍ତା ବର୍ଷ ନଅ ବର୍ଷ ପୁରିଯିବ । ତେଣୁ ଗେରସ୍ତ ଭାରିଯା ମିଶି ଲାଗି ପଡ଼ି ବର ଖୋଜୁଛନ୍ତି । ଏକଥା ତମକୁ ବିଶ୍ୱାସରେ କହିଲି । କୁଆଡ଼େ ପ୍ରଘଟ କରିବ ନାହିଁ । କିନ୍ତୁ ପ୍ରଘଟ ନହବା କଥା ଘର ଘର ବୁଲି ଆସିଲା । ସମସ୍ତଙ୍କର ଅପେକ୍ଷା ମେନ ମାଉସୀ କେଉଁଠୁ ବର ଯୋଗାଡ଼ କରିବ । କୁଣ୍ଡଳୀ କଥା ଜଣାପଡ଼ିଲେ କିଏ ବା ଆସି ବାହାଘର କରିବ । ମେନ ମାଉସୀର ବଳ ବିକ୍ରମ ଉପରେ ସମସ୍ତଙ୍କର ଆସ୍ଥା ଅଛି । ଯାହା କରୁ ଝିଅଟି ସୁଖରେ ରହୁ ।

ହଠାତ୍ ଦିନେ ଗାଁ ଲୋକ ଦେଖିଲେ ହାଟ ପାଖରେ ବସୁଥିବା ଲଙ୍ଗୁଳୀ ବାବା ନାହିଁ । ଚାଳିଶ ପଇଁଚାଳିଶ ବର୍ଷର ସୁସ୍ଥ ସବଳ ଲୋକଟାଏ । ମୁଣ୍ଡରେ ସିନ୍ଦୁର କଲି ଓ ପାଉଁଶ ଦେହଯାକ ବୋଳି ହୋଇ ଖଣ୍ଡେ ହରିଣ ଛାଲ ଉପରେ ବସିଥାଏ । ତା ବସିବା ସ୍ଥାନ ଆମ ଗାଁ ହାଟର ଗୋଟେ କୋଣକୁ । ସେ କେଉଁଠୁ କେମିତି ଆସିଲା କେହି ଜାଣନ୍ତି ନାହିଁ । ସନ୍ଧ୍ୟାରେ ଧ୍ୱନୀ ଜ୍ୱାଳି ଗଞ୍ଜେଇ ଟାଣେ । ତା ହାତର ତ୍ରିଶୁଳ ମୁଣ୍ଡର ଜଟା ଓ ଲମ୍ବା ଦାଢ଼ି ଦେଖି ପିଲାଏ ତା ପାଖ ମାଡ଼ନ୍ତି ନାହିଁ । କିନ୍ତୁ ଏଇ ପାଞ୍ଚ ଛଅବର୍ଷ ହେଲା ଲୋକେ ତାକୁ ଦେଖୁଛନ୍ତି । ଅନେକ ସମୟରେ ଗାଁରେ ବୁଲି ବୁଲି ଭିକ୍ଷା କରେ । ଲୋକେ କହନ୍ତି ତା ହରିଣଛାଲ ତଳେ ବେଶ୍ କିଛି ଟଙ୍କା ପଇସା ସୁନା ମୋହର ଅଛି । ଆସନ ଛାଡ଼ି କୁଆଡ଼େ ଗଲେ ତାର ସବୁ ଜିନିଷ କାନ୍ଧରେ ପଡ଼ିଥିବା ଝୁଲାରେ ପୁରାଏ । କେହି କେମିତି ତା ଗାଁ ଗଣ୍ଡା ଘରଦ୍ୱାର କଥା ତାକୁ ପଚାରିଲେ ତ୍ରିଶୂଳ ଟେକି ମାଆ ତାରା – ମା ତାରା କହି ହସିଦିଏ ।

କିଛିଦିନ ପରେ ଦେଖାଗଲା ସେଇ ଲଙ୍ଗୁଳି ବାବା ମେନ ମାଉସୀ ଘରେ ବସି ପୂଜାପାଠ କରୁଛି । ଝିଅ ବାୟାଣୀକୁ କୋଳରେ ଧରି ମେନା ମାଉସୀ ବସିଛି । ଲଙ୍ଗୁଳି ବାବା କ'ଣ ସବୁ ମନ୍ତ୍ର ବୋଲି ଚାଲିଛି । କିନ୍ତୁ ଏ ଘଟଣା ଦିନେ ଅଧେ ନୁହେଁ ପ୍ରତି ରାତିରେ ଲୋକେ ଦେଖିବାକୁ ପାଇଲେ । ଶେଷରେ ଲଙ୍ଗୁଳି ବାବା ମେନ ମାଉସୀ ଘରେ ରହିଯାଇ ପୂଜାପାଠ କରିବାକୁ ଲାଗିଲା । ବାହାରୁ ଲୋକେ କେବଳ ମନ୍ତ୍ର ପଢ଼ା ଓ ଝୁଣା ଧୂପର ଗନ୍ଧ ପାନ୍ତି । କିଏ କହିଲା ଲଙ୍ଗୁଳୀ ବାବା ପୂଜାପାଠ ଜପତପ କରି ବାୟାଣୀର ରିଷ୍ଟ କଟାଇବ । ଆଉ କିଏ କହିଲା ସେ କାପାଳିକ । ବାୟାଣୀର ସବୁ ରିଷ୍ଟ ସେ ନିଜ ଦେହରେ ପୂରାଇ ଭସ୍ମ କରିଦେବ । ତାର ଶକ୍ତି ବହୁତ ଜଣାଯାଉଛି । ମେନା ଠିକ୍ ଲୋକକୁ ଧରିଛି । ଯାହାବି ହଉ ଝିଅଟିର ସବୁ ରିଷ୍ଟ କଟିଯାଇ ସେ ବାହାଚୋରା ହୋଇ ରହୁ । ମଝିରେ ମେନା ମାଉସୀ ପୂଜା ଭୋଗ ଅନେକ ସମୟରେ ଘରେ ଘରେ ବାଣ୍ଟି ଆସେ । କିନ୍ତୁ ଲଙ୍ଗୁଳି ବାବାକୁ ତ ସମସ୍ତଙ୍କର ବଡ଼ ଭୟ ତା ଛଡ଼ା ସେ କି ଗୁଣିଗାରେଡ଼ି କରୁଛି କିଏ ଜାଣେ ?

ସୁଲି ଦିନେ ଦିନେ ଆସି ତାର ଅତି ବିଶ୍ୱାସୀ ଗୋପୀ ବୋଉ ଆଗରେ ନାନା କଥା କହିଯାଏ । ଦିନେ ଆସି କହିଲା ଜାଣିଛ ଗୋପୀବୋଉ ପୂଜାବେଳେ ବାୟାଣୀ ଲଙ୍ଗୁଳି ବାବା



କୋଳରେ ବସେ । ତା ମୁଣ୍ଡରେ ଚନ୍ଦନ ସିନ୍ଦୁର ଦେଇ କାଳୀମୂର୍ତ୍ତିଙ୍କର ଆଳତୀ କରେ । ଛୁଆଟା ଭୟରେ ମିଟି ମିଟି କରି ବାବାକୁ ଚାହିଁଥାଏ । ଅଳ୍ପ ଦୂରରେ ମେନ ମାଉସୀ ବସି ନିଆଁରେ ଝୁଣା ପକାଇ ପୂଜା ଭୋଗ ସଜାଡ଼ି ଦିଏ । ସେଇ ବାବାକୁ ବାହା କରାଇ ନିଶ୍ଚୟ ବାୟାଣୀର ରିଷ୍ଟ କଟାଇବ । ଗାଁ ଲୋକେ ତା କଥାକୁ ହସରେ ଉଡ଼ାଇ ଦିଅନ୍ତି । କିନ୍ତୁ ଏକଥା ସତ ମେନ ମାଉସୀର କାଣ୍ଡ କାରଖାନା ସମସ୍ତଙ୍କୁ ଆଚମ୍ବିତ କରେ । ବର୍ଷେ ଉପରେ ହେଲାଣି ପୂଜାପାଠ ତାର ବଢ଼ି ବଢ଼ି ଚାଲିଛି । ଠାକୁରଙ୍କ ଉପରେ ତାର ଅଗାଧ ବିଶ୍ୱାସ ହୁଏତ ତାକୁ ସାହାସ ଦେଇଛି । ଝିଅଟିର ମାଆ ସେ, ତାର ଶୁଭାଶୁଭ ଚିନ୍ତା କରି ଯାହା କରିବା କଥା ସେ କରୁଛି । ତା ମନକଥା ଅବଶ୍ୟ ତାକୁ ଜଣାଥିବ ।

ଗାଁ ଲୋକଙ୍କ ସନ୍ଦେହ ସହାନୁଭୂତି ଭିତରେ ବର୍ଷେ ଉପରେ କଟିବାକୁ ବସିଲା । ଲୋକଙ୍କ ମନରୁ ଲଙ୍ଗୁଳି ବାବା ଓ ବାୟାଣୀ କଥା ପ୍ରାୟ ଭୁଲି ହୋଇ ଆସୁଥିଲା । କେତେ ଅତିଥି ଅଭ୍ୟାଗତ ଆସି ଗାଁରେ ଲୋକଙ୍କ ଘରେ ରହନ୍ତି । ସେଇଭଳି ଜଣେ ଅତିଥି ଆଣି ମେନ ମାଉସୀ ତା ଘରେ ରଖିଛି ଧରିନେଲେ ।

ଦିନେ ହଠାତ୍ ଦେଖାଗଲା ବେଶ୍ କିଛି ଲୋକ ଗାଁର ଆସି ମେନ ମାଉସୀ ଘର ଆଗରେ ଗୁଣ୍ଡ ହୋଇଛନ୍ତି । ମେନ ମାଉସୀ ଭୋ ଭୋ ହୋଇ ରଡ଼ି ଛାଡ଼ିଛି । ତାର କାନ୍ଦଣାରୁ କିଛି ବୁଝି ନପାରି କିଏ କେମିତି ସାହାସ କରି ଘର ଭିତରେ ପଶିଲେ । ଦେଖିଲେ ପୂଜାବେଦୀ ତଳେ ଲଙ୍ଗୁଳି ବାବା ଚିତ ହୋଇପଡ଼ିଛି । ପାଟି ଦୁଇପାଖରୁ ଫେଣି ବୋହିଯାଉଛି । ଏତେବଡ଼ ମଣିଷଟା କାଠ ପରି ମରିପଡ଼ିଛି । ନିଶ୍ୱାସ ପ୍ରଶ୍ୱାସ ଚାଲିବାର କିଛି ସଙ୍କେତ ନାହିଁ । ଆମ ଗାଁର ସବୁଠୁ ସାହାସୀ ଟାଣୁଆ ଲୋକ ଲକ୍ଷ୍ମଣ । ସେ ପୂଜା ଘରକୁ ପଶି ଆଗ ଲଙ୍ଗୁଳି ବାବା ଛାତିରେ ହାତ ମାରିଲା । ଆଖିପତା ଟେକି ଦେଖି କହିଲା ନା ଆଉ କିଛି ନାହିଁ । ମେନ ମାଉସୀକୁ ସେ ଶବ ପାଖରୁ ଉଠାଇଆଣି ତା ବାରଣ୍ଡାରେ ବସାଇ ଦେଲା । ଅନାଦି ଦିକ୍ଷାତ ମୁଣ୍ଡରେ ହାତ ଦେଇ ବସିଥାଏ । ବାୟାଣୀ ତା କୋଳରେ । ଲକ୍ଷ୍ମଣ ପଚାରିଲା ଅନାଦି ଭାଇ ଏ ସବୁ କ'ଣ କେମିତି ହେଲା ? ସେ କିନ୍ତୁ ପୁରାପୁରି ନିର୍ବାକ । ମେନ ମାଉସୀ ଟଳି ଟଳି ଉଠି ଆସି ଲକ୍ଷ୍ମଣକୁ କୁଣ୍ଢାଇ ଧରିଲା । କହିଲା ବାପ- ସେ କିଛି ଜାଣନ୍ତି ନାହିଁ । ମୁଁ ରାତି ପାହାନ୍ତରୁ ଉଠି ଗାଧୁଆ ଗାଧୁଆ ସାରି ପୂଜା ଘର ସଜାଡ଼ିବାକୁ ଆସି ଏ ଅବସ୍ଥା ଦେଖିଲି । ମୋ ପାଟି ଶୁଣି ସେ ଉଠିଲେ । ଆମେ କେହି କିଛି ଜାଣି ନାହୁଁ ବାପ । ସବୁଦିନେ ସନ୍ଧ୍ୟାରେ ପୂଜାପାଠ ସାରି ସେ ପ୍ରସାଦ ଖାଆନ୍ତି । ତା ପରେ ଘଣ୍ଟାଏ ଛାଡ଼ି ନାଲି ଚାହା କପେ ପିଅନ୍ତି । କାଲି ମଧ ସେୟା କରିଥିଲେ । ମୁଁ କବାଟ ଆଉଜେଇ ଗଲାବେଳେ କହିଲେ – କାଲି ଅମାବାସ୍ୟା । ଶୀଘ୍ର ଉଠି ପୂଜାରେ ବସିବାକୁ ହବ । ଠାକୁରାଣୀଙ୍କ ନାଲି ବସ୍ତ୍ର ଅଲଗା ରଖିଥିବ । ଆଉ ମନ୍ଦାର ମାଳ । ମୁଁ କହିଲି ସବୁ ବ୍ୟବସ୍ଥା କରିଛି । ଆମେ ସବୁ ସେ ଘରେ ଯାଇ ଶୋଇଲୁ । ଭୋରରୁ ଉଠି ଦେଖିଲୁ ଏ ଅବସ୍ଥା । କ'ଣ



ହେଲା ଭଗବାନ ଜାଣନ୍ତି ଲୋ ମାଆ । ମୋ ମୁଣ୍ଡ କିଛି କାମ କରୁନି । ଯାହା କରିବାର ତମେ ସବୁ କର ବାପ । ମୁଁ ମୋ ଛୁଆକୁ ସମ୍ଭାଳେ ।

ଅପମୃତ୍ୟୁରେ ପୋଲିସ୍ ଫୋଲିସ୍ ଝାମେଲା ଅଛି ବୋଲି ଗାଁ ଲୋକେ ଆଉ ସେ ସବୁ ଝମେଲାକୁ ପଶିବାକୁ ଚାହିଁଲେ ନାହିଁ । କୌଣସି ମତେ ଶବଦାହ କାମ ସାରିଦେଲେ । କିନ୍ତୁ ସମସ୍ତଙ୍କ ମନରେ ସେଇ ଗୋଟିଏ ପ୍ରଶ୍ନ । ଲୋକଟା ମଲା କେମିତି ? ପାଞ୍ଚଫୁଟ ଉପରେ ଉଚ୍ଚତା ବେଶ୍ ସୁନ୍ଦର ସ୍ୱାସ୍ଥ୍ୟର ଲୋକଟା । ରୋଗ ବୈରଗ୍ୟ କିଛି ନାହିଁ । କିଏ କହିଲା ହୃଦଘାତ କିଏ କହିଲା - ପଡ଼ିଯାଇ ମୁଣ୍ଡରେ ଆଘାତ କିଏ ବା କହିଲା ସାପକାମୁଡ଼ା । ଗାଁରେ ସାପ କାମୁଡ଼ିବା କିଛି ବିଚିତ୍ର ନୁହଁ । କେହି କେହି କହିଲେ ବଡ଼ ନାଗ ସାପଟେ ମେନ ମାଉସୀ ଘର ପାଖରେ ବୁଲୁଥିଲା ବୋଲି ଥରେ ମେନ ମାଉସୀ ନିଜେ କହୁଥିଲା । ଦାହ କାମ ସରିଲା ପରେ ସ୍ୱାମୀ ସ୍ତ୍ରୀ ଦୁହେଁ ନିଜ ପରିଜନ ଭଳି କ୍ରିୟା ସାରିଲେ । ବାରଦିନରେ ସବୁ ଲୋକଙ୍କୁ ନିମନ୍ତ୍ରଣ କରି ପ୍ରସାଦ ଭୋଜନ କରାଇଲେ । ସେଇଦିନ ଗାଁର ସବୁଲୋକ ଝିଅଟିକୁ ଭଲକରି ଦେଖିଲେ । ଗୋରା ତକ ତକ କୁଞ୍ଚକୁଞ୍ଚିଆ ବାଳ ବଡ଼ ବଡ଼ ଆଖି । ସୁନ୍ଦର ଝିଅଟିଏ । ଘରେ ଏ ସବୁ କ'ଣ ହେଉଛି ସେ କିଛି ବୁଝିପାରୁ ନଥାଏ । କିନ୍ତୁ ମଝିରେ ମଝିରେ ଠାକୁର ଘର ଆଡ଼େ ମିଟି ମିଟି କରି ଚାହୁଁଥାଏ । କାହାକୁ ଖୋଜୁଛି ଯେମିତି । ମେନ ମାଉସୀ ଦଉଡ଼ି ଆସି ତାକୁ କାଖେଇ ନେଇଗଲା । କିନ୍ତୁ ତା ଆଖିରୁ ଜଣାଯାଉଥାଏ । ସେ ବହୁତ ଭୟପାଇ ଯାଇଛି ।

ପ୍ରାୟ ଚାରି ଛ' ମାସ କଟିଗଲା । ଗାଁ ଲୋକେ ଲଙ୍ଗୁଳି ବାବା କଥା ପ୍ରାୟ ଭୁଲି ଆସୁଥିଲେ । କାହା କାହା ମନରେ ଅବଶ୍ୟ ସନ୍ଦେହ ରହିଥାଏ ଲୋକଟା ମଲା କେମିତି । ସାପ କାମୁଡ଼ା କଥାଟା ଅବଶ୍ୟ ବିଶ୍ୱାସ କରିପାରୁନଥାନ୍ତି । ଛଅ ସାତମାସ ଭିତରେ ଗାଁର ପ୍ରାୟ ସମସ୍ତେ ସେ ଅଘଟଣ ଭୁଲି ଯିବାକୁ ବସିଥିଲେ । କିନ୍ତୁ ହଠାତ୍ ଦିନେ ଦେଖିଲେ ଟ୍ରକ୍‌ରେ ବାଲି ସିମେଣ୍ଟ ଇଟା ଆସି ମେନ ମାଉସୀ ଘର ଆଗରେ ପଡ଼ିଲା । ଟ୍ରକ୍‌ବାଲା କହିଲା ଦିକ୍ଷାତ୍ ଘର ମନ୍ଦିର ତୋଳା ହେବ । ସାମନା ଘର ଭଙ୍ଗା ହେଇ ନୂଆଘର ହେବ । କାଲିଠୁ ମିସ୍ତ୍ରୀ ମୂଲିଆ ଲାଗିବେ । ଗାଁ ଲୋକେ ଆଶ୍ଚର୍ଯ୍ୟ ହେଇ ମୁହଁକୁ ମୁହଁ ଚାହାଁଚାହିଁ ହେଲେ । ପୁରୋହିତ ଗିରି କରି ଚଳିବା ଲୋକ ଏତେ ଟଙ୍କା ପାଇଲା କେଉଁଠୁ ? ଘର ଓ ମନ୍ଦିର ତୋଳବାରେ କେତେ ଟଙ୍କା ଖର୍ଚ୍ଚ ହେବ, ପୁରୋହିତେ ଯୋଗାଡ଼ କଲେ କେଉଁଠୁ ? ଲୋକଙ୍କ ମନରେ ବଢ଼ିବାକୁ ଲାଗିଲା । ମେନ ମାଉସୀ କିଛି ପୋତାମାଲ୍ ପାଇଲାକି ? କେଉଁଠୁ କେମିତି ସେଇ ସନ୍ଦେହରେ ଥିବା ବେଳେ ଦିନେ ଲକ୍ଷ୍ମଣ ଯାଇ ମେନ ମାଉସୀ ପାଖରେ ପହଞ୍ଚିଲା । ତାକୁ ଦେଖି ମେନ ମାଉସୀ କହିଲା - ଦେଖିଲୁ ବାପ କାମ କେମିତି ଚାଲିଛି । ଗୋବିନ୍ଦଙ୍କ ସ୍ୱପ୍ନାଇବା ଏତେ ଦିନେକେ ଫଳିଲା । ମୋ କଥା କେହି ମାନୁନଥିଲେ ଏବେ ଦେଖ ।



ଲକ୍ଷ୍ମଣ କହିଲା - ହଁ ଯେ ମାଉସୀ ଏତେ ଟଙ୍କା ପାଇଲ କେଉଁଠୁ ? ମେନ ମାଉସୀ ହସିଲା । କହିଲା ତୁ ବିଶ୍ୱାସ କରିବୁ ନାହିଁ ସିନା ସେ ଜଖ । ମୋ ଗୋବର ଗାଡ଼ିଆ ଭିତରେ ମୁଁ ଦୁଇ ଚାରିମାସ ତଳୁ ଗୋଟେ ଉଜ୍ଜ୍ୱଳ ଆଲୁଅ ଦେଖେ । କୁଆଡୁ ଘୂରି ଘୂରି ଆସି ସେଇ ଗୋବର ଗଦାରେ ପଡ଼େ । ମୁଁ ପରିଶ୍ରା କରିବାକୁ ପଦାକୁ  ଉଠିଲେ ଦେଖେ । ପ୍ରଥମେ ତ ମୁଁ ଡ଼ରିଯାଇ ଘରକୁ ପଳାଇ ଆସୁଥିଲି । କେତେଥର ଦେଖିଲା ପରେ ଦିନେ ପୁରୋହିତଙ୍କୁ ଡ଼ାକି ଦେଖାଇଲି । ସେ କହିଲେ ଏହା ଜଖ । ମୁଁ ପିଲାଦିନେ ଶୁଣିଛି । ତାଙ୍କୁ କିଛି ନ କହି ମୁଁ ସାତ ଆଠଦିନ ପରେ ଦିନରେ ଯାଇ ସେ ଗୋବର ଗଦାକୁ ଖୋଳିଲି । ମିଛ କହିବି ନାହିଁ ବାପ ସେଠୁ ଯାହା ପାଇଛି ସେଥିରେ ମନ୍ଦିର ତୋଳାଉଛି । ସବୁ ସେଇ ଗୋବିନ୍ଦଙ୍କ ଦାନ । ନହେଲେ ମୋର କି କ୍ଷମତା ଏ ସବୁ କାମରେ ହାତ ଦେଇଥାନ୍ତି । ମନ୍ଦିର ସରୁ ତମେ ସବୁ ପ୍ରତିଷ୍ଠା ଦିନ ଆସିବ ନାହିଁକି ? ସମସ୍ତେ ଆସି ବାୟାଣୀକୁ କଲ୍ୟାଣ କରିଯିବ ।

ପରେ ଶୁଣିଛି ଗାଁ ଲୋକ ସମସ୍ତେ ଚୁପଚାପ୍ ହେଲେ । ଜଖ କଥା ମିଛ । ଲଙ୍ଗୁଳି ବାବା ମୁଣିରୁ କେବେ ମୋହର ଟଙ୍କା ପାଇଛି ମେନ କିଏ ଜାଣେ । ସେ ମଲାପରେ ତାଙ୍କୁ ଉଠାଇ ନେଲାବେଳେ କେହି ତା ଝୁଲା ମୁଣି କିମ୍ୱା ହରିଣଛାଲ ଦେଖିନାହାନ୍ତି । ସେଥିପ୍ରତି କାହାରି ନଜର ନାହିଁ । ଥିଲା ଖଣ୍ଡେ କଉପୁନି । ମେନ ମାଉସୀର ଜଖ ପରି ଲଙ୍ଗୁଳି ବାବାର ମୃତ୍ୟୁ ମଧ୍ୟ ଗାଁ ଲୋକଙ୍କ ମନରେ ସନ୍ଦେହ ଘେରରେ ରହିଗଲା ।





# ଶଙ୍କର

ଝିପିଝିପି ବର୍ଷା, ଅନ୍ଧାର ରାତି, ସୁଲି ହାତରେ ଲଣ୍ଠନ ଓ ଗୋଟେ ଛତା ଧରି ଗୁହାଳ ଘର ଆଡ଼କୁ ଆଗେଇଲା । ଗାଈଙ୍କ ପାଖରେ ନଡ଼ା ନ ପକାଇଲେ ରାତି ସାରା ବୋବାଳି ଛାଡ଼ିବେ । ମାଗୁଣିଆ ଭକର ଟୋକାକୁ ତିନିଦିନ ହେଲା ଜର । ସେ ଆସୁନାହିଁ, ବେଶୀ ଜୋରରେ ବର୍ଷାହେଲେ ଯାଇ ହବେନି । ସୁଲି ଘର ଗୁହାଳ ଘରଟା ଢ଼ିଙ୍କିଶାଳ ପଛ ପଟେ ଘରଠାରୁ ବେଶ୍ କିଛି ଦୂର, ଗୋବର ଗନ୍ଧକୁ ମହେଶ୍ୱର ଚିଡ଼େ, ତାକୁ ଗନ୍ଧାଏ ତେଣୁ ସେ ଗୁହାଳଟା ଦୂରରେ କରିଛି ।

କୁଆଁ କୁଆଁ ଶବ୍ଦଶୁଣି ସୁଲି ଥମକତ ଛିଡ଼ା ହେଲା । ଅନ୍ଧାରରେ ଭଲ ଦିଶୁନାହିଁ ଲଣ୍ଠନକୁ ଆଉଟିକେ ତେଜିଦେଲା । ପୁଣି ବିଲେଇ କେଉଁଠି ଛୁଆ ଦେଇଛି ନା କ'ଣ ? ଏ ନିଆଁ ଲଗା ବିଲେଇଙ୍କୁ ପାରିହବନି । ବର୍ଷା ଆରମ୍ଭ ତାଙ୍କ ଛୁଆ ଦେବା ବେଳ । କେତେଥର ସୁଲି ସେ ବିଲେଇ ଛୁଆ ତା ମାଆକୁ ଖଟତଳୁ, ଭାଡ଼ିଉପରୁ ତଡ଼ି ବିଦା କରିଛି । ପୁଣି ଏଇପାଖରେ କେଉଁଠି ଛୁଆ ଦେଇଛି ବୋଧେ । ଛୁଆ ଦେଲାପରେ ମାଛ ଶୁଖୁଆ ଦୁଧ ଦହି ଯେତେ ସାବଧାନରେ ରଖିଲେବି ଚୋରାଇ ଖାଇଦିଏ । ଅନେକ ସମୟରେ ସୁଲି ଜାଣିବି ଚୁପ୍ ରହେ । ମନେ ମନେ ଭାବେ ଆହା ପୁଆତି ବିଲେଇଟା ଭୋଗ କରୁଥିବ । ଯାହା ଖାଉଛି ଖାଉ ଘରେ କୋଉ ଛୁଆପିଲା ଅଛନ୍ତି ଯେ ଏତେ ଦରବ ଲୋଭକରି ସାଇତିବ ବିଲେଇଟା ଖାଇଲେ ହେଲେ ତା ଛୁଆଙ୍କୁ ଖୀର ଦେବ ।

ଲଣ୍ଠନ ତେଚ୍ଛି ଦେଇ ସୁଲି ପୁଣି କାନ ପାତିଲା, ଏ ପାଖରେ କେଉଁଠି ଘଡ଼ିଏ ପହଡ଼େ ଛାଡ଼ି କୁଆଁ କୁଆଁ ଶୁଭୁଛି । ଭାବିଲା ଆଗ ଗାଈଙ୍କୁ ନଡ଼ା ପକାଇ ଦିଏ ତା ପରେ ଦେଖିବି ବର୍ଷାରେ ଛୁଆଗୁଡ଼ା ମରିଯିବେ । ଖଣ୍ଡେ ପାଳ ଆଣି ଘୋଡ଼ାଇ ଦେବି । ଜନମ ହେଲା ଛୁଆଗୁଡ଼ାଙ୍କୁ ତ ଏବେ ତଡ଼ି ହବନି । ମାସେ ଯାଉ ଆଖିଫିଟୁ । ତା ପରେ ଦେଖିବା ଭାବି ସୁଲି ନଡ଼ା ଗଦା ପାଖକୁ ଆଗେଇଲା । ଗୁହାଳ ବାରଣ୍ଡାରେ ନଡ଼ାଗଦା ବର୍ଷାପାଣି ନ ପଡ଼ିବା ପାଇଁ ବାରଣ୍ଡା ବି



ଛାଉଣି ଦେଇଛି । ଛତା ବନ୍ଦ କରି ସୁଳି ଲଣ୍ଠନକୁ ଟେକିଧରି ନଡ଼ାଗଦା ଆଡ଼କୁ ହାତ ବଢ଼ାଇଲା । "ଇଲୋ ମାଆଲୋ ଇଏ କ'ଣ" କହି ସୁଳି ଉରି ଛଅପାଦ ପଛକୁ ଘୁଂଚି ଆସି ଥକ୍କାମାରି ଠିଆହେଲା । କ'ଣ କରିବ ନକରିବ ଚିନ୍ତା କରିବା ଆଗରୁ ପୁଣି ସେଇ କୁଆଁ କୁଆଁ ସ୍ୱର ଶୁଣି ସୁଳି ଦଉଡ଼ି ଗଲା । ରକ୍ତ ଜୁଡ଼ବୁଡ଼ୁ ଲୁଗା ସହିତ ସେଇ ସଦ୍ୟଜାତ ଶିଶୁଟିକୁ ଟେକି ଆଣିଲା । ଛିଣ୍ଡାଶାଢ଼ୀ ଖଣ୍ଡିକରେ ଛୁଆଟି ଗୁଡ଼ା ହେଇଛି । ଶାଢ଼ୀ ସହିତ ଛୁଆ ଆଉ ଲଣ୍ଠନ ଛତାକୁ ଧରି ସୁଳ ଘର ଭିତରକୁ ଦଉଡ଼ି ଗଲା । ଆଖି ଦୁଇଟି ଛଡ଼ା ଆଉ କିଛି ଦିଶୁନି, ନଡ଼ା ପକାଇବା କଥା ସେ ଭୁଲିଗଲା । ମନରେ ଭୟ କାଳେ କିଏ କୋଉଠି ଦେଖି ପକାଇବ ।

କବାଟ ବନ୍ଦ କରି ରକ୍ତ ଲଗା ଲୁଗାକୁ କାଢ଼ି ପକାଇଲା । ଦେଖିଲା ପୁଅଟିଏ କାହାଛୁଆ ? କିଏ ରଖିଯାଇଛି ।

ଜାତି ଅଜାତି ସୁଳି ମୁଣ୍ଡରେ କିଛି ପଶୁନି । ମଶିଣା ପାରି ଛୁଆକୁ ଶୁଆଇ ସେ ଗରମ ପାଣି କରିଆଣି ଛୁଆକୁ ପୋଛା ପୋଛି କରିଦେଲା । ଉଷୁମ ପାଣିରେ ଦୁଇଗରିଟୋପା ମହୁ ମିଶାଇ ସେ ଛୁଆ ପାଟିରେ ଟିକେ ଟିକେ ଢ଼ାଳିଦେଲା । କିନ୍ତୁ ସୁଳି ମନ ସେଥିରେ ବୁଝିଲାନି ପାଟିରେ ଟିକେ ଟିକେ ଢ଼ାଳିଦେଲା । କିନ୍ତୁ ସୁଳି ମନ ସେଥିରେ ବୁଝିଲାନି । ପେଟ ପୁରି ନଥିବ ଭାବି ଖିର ଦୁଇ ଉମୁଚରେ ପାଣି ମିଶାଇ ଆଣି ଟିକେ ଟିକେ ପିଆଉଥିଲା । ସତକୁ ତା ପରେ ଛୁଆଟି ଶୋଇ ପଡ଼ିଲା ।

ସୁଳି ତା ଶୋଇବା ଖଟରେ ଉଦର ଖଣ୍ଡେ ପାରି ଛୁଆଟିକୁ ନେଇ ଶୁଆଇଲା । ଦୁଇପଟେ ଦୁଇଟା ତକିଆ ଗୁଂଜି ଦେଲା । ଭାବିଲା ତାକୁ ଆରାମ ଲାଗିବ ସେ ଭାବିବ ତା ପାଖରେ ତା ମାଆ ଶୋଇଛି । ଏଥର ସୁଳିର ଚିନ୍ତା ତା ମାଆ ପାଖକୁ ଫେରିଆସିଲା । କିଏ ସେ ଚଣ୍ଡାଳୁଣୀ ? ଦଶମାସ ପେଟରେ ଧରି ଏମିତି ବର୍ଷା ରାତିରେ ଗୋରୁ ଗୁହାଳରେ ଛାଡ଼ିଗଲା ? ପୁଣି ସେ କ'ଣ ଯାଣିଥିଲା ମୁଁ ବାଂଝ ମୋର ଛୁଆପିଲା ନାହିଁ । ପିଲାଟିଏ ପାଇଲେ ତାକୁ ଗୋଟେଇ ନେବି ? ପିଲା ଥିଲେବି କ'ଣ ମଣିଷ ପିଲାଟିକୁ ଏମିତି ଅବସ୍ଥାରେ ଛାଡ଼ି ଆସେ ମରିବ ବୋଲି । ଧନ୍ୟ ସେ ମାଆ । ମାଆ ନୁହଁ ରାକ୍ଷସୀ ନାଁ ନାଁ ସେ ନିଶ୍ଚୟ ଗୋଟେ ବେଶ୍ୟା ହୋଇଥିବ ପରପୁରୁଷଙ୍କୁ ମେଣ୍ଢାକରି ରଖି ପଇସା ରୋଜଗାର କରିବା ଯାହାଙ୍କର ଧନ୍ଦା ସେ ଭଳି ସ୍ତ୍ରୀ ଲୋକ ପିଲା ଜଂଜାଳ କାହିଁକି ନେବେ ? ସେଇ ଭଳି ଗୋଟେ ଦୋଉରୁଣୀର ଫଳ ଇଏ ତା ମନ ବିଶେଇ ଉଠିଲା, ଭାବିଲା ମୁଁ ଉଣ୍ଡାଳୁଣୀ କାହିଁକି ତାକୁ ଛୁଇଁଲି ପୁଣି ଘରକୁ ଆଣିଲି ? ମହେଶ୍ୱର ରାତିରେ ଫେରି ଏ ଛୁଆକୁ ଦେଖିଲେ କ'ଣ କହିବ କ'ଣ କରିବ କିଏ ଜାଣେ ? ରାଗ ବ୍ରହ୍ମ ଚଣ୍ଡାଳ, ତା ରାଗକୁ ସୁଳିର ବଡ଼ ଡ଼ର । ସେ ଯେତିକି ଭଲ ରାଗ ହେଲେ ତାର ହିତାହିତ ଜ୍ଞାନ ରହେ ନାହିଁ । ସେ ଗାଁରେ ଲୋକେ ତାକୁ ମାନନ୍ତି ଯେତିକି ଭୟ କରନ୍ତି ସେତିକି । କେତେବେଳେ ତା ରୂପ କି ଭଳି ହୁଏ ସେଇ ଏକା ଜାଣେ ।



ମହେଶ୍ୱରକୁ ବାହା ହେଇ ସୁଲି ଆଠବର୍ଷ ହେଲା ଏ ଘରେ ବୋହୂ ହେଇଛି । ଦୁଇ ଭାଇ, ରାଜେଶ୍ୱର ମହେଶ୍ୱର, ବଡ଼ ଭାଇ ରାଜେଶ୍ୱର ମାଷ୍ଟର ଚାକିରୀ କରି କଟକରେ ଥାଏ ତା ସ୍ତ୍ରୀ ପିଲାଙ୍କୁ ଧରି । ତାର ତିନୋଟି ଝିଅ ପାଠ ପଢ଼ନ୍ତି ସହରରେ । ତେଣୁ ଖରାଛୁଟି ବ୍ୟତୀତ ଅନ୍ୟ ସମୟରେ ବିଶେଷ ଆସି ପାରନ୍ତି ନାହିଁ । ଜମି ବାଡ଼ି ଘରର ଯାବତୀୟ କାମ ମହେଶ୍ୱର ବୁଝେ । ଦୁଇ ଭାଇଙ୍କ ସମ୍ପର୍କ ଭଲ । ତାଙ୍କ ସ୍ତ୍ରୀ ରାଜଲକ୍ଷ୍ମୀ ମଧ୍ୟ ସୁଲିକୁ ଭଲପାନ୍ତି । ଭାଇ ଗାଁକୁ ଆସିଲେ ମହେଶ୍ୱର ଜମିବାଡ଼ି ଘରର ଆୟବ୍ୟୟ ସବୁ ଖବର ଭାଇଙ୍କୁ ଜଣାଇ ହିସାବ ଦିଏ । ଜମି ଆୟର ଟଙ୍କା ମଧ୍ୟ କିଛି ଧରାଇଦିଏ । ମହେଶ୍ୱରର ବିଦ୍ୟା ଅଛ । ଗାଁ ରେ ରହି ସାଙ୍ଗସାଥିଙ୍କ ସହିତ ମିଶି ନିଶାପାଣି ମଧ୍ୟ ଟିକେ କରେ । ରାଜେଶ୍ୱର ସେସବୁ ଜାଣନ୍ତି ଗାଁରୁ କିଛି ଦୂରରେ ଗୋଟେ ଅନାଥଶ୍ରମ ମଧ୍ୟ ମହେଶ୍ୱର ନିଜ ଉଦ୍‌ଯୋଗରେ କରାଇଛି । ଦଶବାରଟି ପିଲା ସେ ଅନାଥାଳୟରେ ଅଛନ୍ତି । ଆଖପାଖ ଗାଁରୁ କିଛି ସାହାର୍ଯ୍ୟ ଯୋଗାଡ଼ କରେ । ବାକୀ ଖର୍ଚ୍ଚ ଗୋଟେ ଏନ୍, ଜିଓ ସଂସ୍ଥା ଯୋଗାଏ । କୌଣସି ମତେ ଚଳିଯାଏ । ଭାଇକୁ ଜଣାଇ ନିଜ ଘରୁ କିଛି ଚାଉଳ ଡ଼ାଲି ଆଳୁ ମଧ୍ୟ ଦିଏ । ରାଜେଶ୍ୱର ତେଣୁ ଭାଇର କିଛି ମନ୍ଦଗୁଣ ଶୁଣିଲେ ମଧ୍ୟ ଚୁପ୍ ରହନ୍ତି ।

ଚାଷୀ ଘର, ଅଳ୍ପ ବିଦ୍ୟା ସେଇ ସବୁ ପାଇଁ ମହେଶ୍ୱର ସେଇ ପାଖ ଗାଁର ଝିଅଟିଏ ବାହାହେଇଛି । ରାଜେଶ୍ୱର ନିଜେ ପସନ୍ଦ କରି ବାହାଘର କରିଛି । ବିଧବା ମାଆ – ପୁଅ ଝିଅ ଯୋଡ଼ିଏ । ବଡ଼ଭାଇଟି ମହାଜନ ସିରସ୍ତାରେ କାମ କରେ । ଝିଅଟି ତାଙ୍କ ସ୍ତ୍ରୀ ରାଜେଶ୍ୱରୀ ପରି ସୁନ୍ଦର ନୁହଁ କିନ୍ତୁ ଶ୍ୟାମଳବର୍ଣ୍ଣ ହେଲେ ମଧ୍ୟ, ଦେଖିଲେ ଖୁସି ଲାଗିବ । ସୁଲି ଷୋଳ ସତର ବର୍ଷରେ ମହେଶ୍ୱରକୁ ବାହା ହେଇ ଆସିଥିଲା । ସାତ ଆଠ ବର୍ଷ ହେଲାଣି କିନ୍ତୁ ତାଙ୍କର ପିଲାପିଲି କିଛି ହେଇନାହିଁ । ବର୍ଷରେ ଥରେ ଦୁଇଥର ଗାଁ କୁ ଆସିଲେ ମଧ୍ୟ ଦୁଇ ଯାଁଙ୍କର ଭଲ ପଡ଼େ ପିଲାଏ ଖୁଡ଼ୀକୁ ଭଲପାନ୍ତି । ରାଜେଶ୍ୱର ଭାଇକୁ ଶ୍ରଦ୍ଧା କରନ୍ତି ।

ନାନା କଥା ବିନ୍ତା କରୁକରୁ ଛୁଆଟି ପାଖରେ ଇଣ୍ଟଣଟି ଜାଳି ବସି ରହିମା ସୁଲି । ପିଲାଟିକୁ ଏକୁଟିଆ ଛାଡ଼ି ରୋଷେଇ କରିବାକୁ ତାର ଇଚ୍ଛାହେଲା ନାହିଁ । ମନ ଉଚ୍ଚାଟ ହେଉଥାଏ । ମହେଶ୍ୱର କଥା ମନେ ପଡ଼ି ଯାଉଛି । ଛୁଆକୁ ଦେଖି ସେ କ'ଣ କହିବ କେଜାଣି ? ତାର ସବୁ ଗୁଣ ଦୁର୍ଗୁଣ ସୁଲି ଏଇ ସାତ ଆଠ ବର୍ଷ ଭିତରେ ଜାଣି ସାରିଛି । କେତେବେଳେ ଆଦର ସୁଆଗରେ ବୁଡ଼ାଇ ଦିଏତ କେତେବେଳେ ରାଗିଯାଇ ମାରିବାକୁ ଗୋଡ଼ାଏ । ସପ୍ତାହରେ ଦିନେ ଦୁଇଦିନ କୁଆଡ଼େ ଉଭାନ ହେଇଯାଏ । ପଚାରିଲେ କହେ ତୋ ସଉତୁଣୀ ଘରେ ଥିଲି । ସୁଲି ରାଗରେ ଜଳିଯାଏ । ନଇତୁଠରେ ସ୍ତ୍ରୀ ଲୋକ ମାନଙ୍କ ପାଖରୁ ସୁଲି ନାନା କଥା ଶୁଣେ । କ୍ଲବ ଘରେ କୁଆଡ଼େ ମହେଶ୍ୱର ସାଙ୍ଗରେ ଅନ୍ୟ ମର୍ଦ୍ଦମାନେ ନିଶାପାଣି କରୁଛନ୍ତି । ଜୁଆ ଖେଳୁଛନ୍ତି ପୁଣି ଅନାଥ ଆଶ୍ରମରେ ଦୁଇଟା ସ୍ତ୍ରୀ ଲୋକ ଅଛନ୍ତି । ତାଙ୍କ ସାଙ୍ଗରେ ମହେଶ୍ୱରର ଭାବ । ସୁଲି



ସବୁ ନଶୁଣିଲା ପରି ପଳେଇ ଆସେ । ମନ ବିକଳରେ ଆଖିରୁ ଲୁହ ପୋଛେ । ଏଇ ସବୁ କଥା ଭାବୁ ଭାବୁ ସୁଲି ଅଖିଆ ଛୁଆଟି ପାଖରେ ଶୋଇ ପଡ଼ିଛି ।

ନିଦ ଭାଙ୍ଗିଲା ବାଡ଼ି ପଟ କବାଟ ଖଡ଼ ଖଡ଼ ଶବ୍ଦରେ । ଲୁଗା ପଟା ସଜାଡ଼ି ସୁଲି ଉଠି ପଡ଼ିଲା, ମହେଶ୍ୱର ରାତିରେ ଫେରିନାହିଁ । କୁଆଡ଼େ ଗଲେ କେଉଁଠି ରହିଲେ ଚିନ୍ତା କରିବା ଆଗରୁ ଛୁଆଟି ଉପରେ ତା ଆଖି ପଡ଼ିଲା ନିଶ୍ଚିନ୍ତରେ ଶୋଇଛି । ବାରିପଟେ ମାଗୁଣିଆ ଡ଼ାକୁଥିବ ବାଉରି ପିଲାସେ । ଘର ଭିତରକୁ ପଶେ ନାହିଁ । ଗାଇ କାମ ବାରିଘର କାମ କରେ । କବାଟ ଖୋଲିଲା ପରେ ମାଗୁଣିଆ ପଚାରିଲା - ମାଆ କାଲି ରାତିରେ ଗାଇଙ୍କୁ କ'ଣ ନଡ଼ା ଦେଇନଥିଲ କି ? ଏମିତି ହମ୍ବାଳୁଛନ୍ତି କାହିଁକି ? ସୁଲି ମନରେ ଛନକା ପଶିଲା ସତେତ ! ଛୁଆଟିକୁ ପାଇ ସୁଲି ଗାଇଙ୍କ କଥା ପୁରା ଭୁଲିଯାଇଛି । କହିଲା ନାରେ ବର୍ଷାଯୋଗୁ ମୁଁ ଭୁଲି ଯାଇଛି । ଖରାବେଳେ ତୋରାଣି ପାଣି ଦେଇ ଯାହା ନଡ଼ା ଦେଇଥିଲି । ଯା ଯା ଆଗ ତାଙ୍କୁ ନଡ଼ା ଦେଇଦେବୁ ।

ସୁଲି ଆଉ ନଈକୁ ନଯାଇ ଘରେ ନିତ୍ୟକର୍ମ ସାରିଦେଲା । ଚୁଲି ଲଗାଇ ଆଗ କ୍ଷୀର ଆଉଟି ନେଲା । ମହେଶ୍ୱର ପାଇଁ ରୋଷେଇ କରିବାର ନାହିଁ । ସେ ତ ରାତିରେ ଫେରିନି ଆଜି ପ୍ରଥମଥର ପାଇଁ ସୁଲିର ମନ ତା ପାଇଁ ଉଚ୍ଚାଟ ହେଲା । ଛୁଆଟିକୁ ଦେଖିଲେ ସେ କ'ଣ କରିବ ସେଇ ଚିନ୍ତା ତା ମନକୁ ଘାରୁଛି । ଯାହା ହେବ ଦେଖା ହେବ ଭାବି ସେ ଛୁଆକୁ ଖଟରୁ ଟେକି ଆଣି ଉଷୁମ ପାଣି କନାରେ ପୋଛା ପୋଛି କରି ମୁଣ୍ଡରେ କଳା ଟିପାଟିଏ ଦେଲା, କ୍ଷୀର ଚାମୁଚାଏ ପିଆଇ ପୁଣି ଖଟରେ ଶୁଆଇ ଦେଇ ତରତର ହେଇ ଭାତ ତରକାରୀ କରି ବସିଲା । ମହେଶ୍ୱର କାଲି ରାତିରୁ କଉଠି କ'ଣ ଖାଇଥିବ ? ପେଟରେ ଭୋକ ରହିଲେ ଆହୁରି ରାଗିବ । ହଠାତ୍ ସୁଲି ମନକୁ ଗୋଟେ କଥା ଆସିଲା ତର ତର ହେଇ ଚିଠି ଖଣ୍ଡେ ଲେଖି ସେ ମାଗୁଣିଆକୁ ଦେଇ କହିଲା - ତୁ ଏଚିଠି ଖଣ୍ଡ ନେଇ ଦଉଡ଼ି ଯିବୁ । ମୋ ବୋଉକୁ ଦବୁ କହିବୁ ସାଙ୍ଗେ ସାଙ୍ଗେ ତୋ ସହିତ ଆସିବ । ଡ଼େରି କରିବୁ ନାହିଁ । ମାଗୁଣିଆ  ଚିଠି ଧରି ଦଉଡ଼ିଲା ।

ସୁଲି ବାପଘର ନଈ ସେପାରି ତୃମ୍ବାପଦୀ । ଯିବା ଆସିବା ଖୁବ୍ ବେଶୀରେ ଘଣ୍ଟେ ଦେଢ଼ ଘଣ୍ଟା ଲାଗିବ । ଏମିତିରେ ବି ସୁଲି ବୋଉ ଶାଗ ମୁଗ ଯାହା ପାନ୍ତି ଧରି ମାସରେ ଥରେ ଦି ଥର ଆସନ୍ତି । ଆସିଲେ ମହେଶ୍ୱର ଖୁସିହୁଏ । ତାଙ୍କ ହାତ ରନ୍ଧା ମାଛ ମାଂସ ତରକାରୀ ମହେଶ୍ୱରକୁ ଖାଇବାକୁ ଭଲ ଲାଗେ । ସୁଲି ବଡ଼ଭାଇ ଜଗବନ୍ଧୁକୁ ମହେଶ୍ୱର ଜମିଦାରଙ୍କ ସିରସ୍ତାରେ ରଖାଇ ଦେଇଛି । ଭାଇ ବାହାଘର ମଧ୍ୟ ବର୍ଷେ ହେଲା ସରିଛି । ସୁଲି ବୋଉ ଆସିଲେ ମହେଶ୍ୱର ତାଙ୍କୁ ଦୁଇଦିନ ଜାଗାରେ ଚାରିଦିନ ଅଟକାଇଦିଏ । ତାଙ୍କ ଦେହପା ଭଲମନ୍ଦ ବୁଝେ ।

ଛୁଆକୁ ଦେଖି ଯଦି ମହେଶ୍ୱର କିଛି ରାଗ ରୋଷ କରେ ତା ବୋଉ ଥିଲେ ସବୁ ସମ୍ଭାଳି ନେବେ । ସେଇ ଭରସାରେ ସୁଲି  ତା ବୋଉକୁ ଡ଼କାଇଛି । ସେ ମନେ ମନେ ଠାକୁରଙ୍କୁ ଡ଼ାକୁଥାଏ ମହେଶ୍ୱର ଆସିବା ଆଗରୁ ତା ବୋଉ ପହଞ୍ଚିଯାଉ । ସେଇ ଚିନ୍ତାରେ ତାର ଆଉ



ଭୋକ ଶୋକ ନଥାଏ । ଭାବିଲା ବୋଉ ଆସୁ ସାଙ୍ଗ ହେଇ ଖାଇବେ । ଛୁଆଟିକୁ ଚାହିଁ ଦେଖିଲା କେତେ ନିଶ୍ଚିନ୍ତରେ ଶୋଇଛି, ଦିନ କେତେ ହେଲାଣି ମନେ ମନେ ଅନୁମାନ କଲା ବୋଉ ବୋଧେ ଆଉ ଘଡ଼ିକରେ ପହଞ୍ଚିବ । ସେ ନିଶ୍ଚୟ ମହେଶ୍ୱରକୁ ସମ୍ଭାଳି ନବ ।

ସତକୁ ସତ ମହେଶ୍ୱର ପହଞ୍ଚିବା ପୂର୍ବରୁ ସୁଲି ବୋଉ ପହଞ୍ଚିଗଲେ । ଘରେ ସୁଲିକୁ ସୁସ୍ଥ ଦେଖି ସେ ଟିକେ ଆଶ୍ୱସ୍ତ ହେଲେ । ପଚାରିଲେ ତୁ ଖାଇଲୁଣି ? ମହେଶ୍ୱର କାହାନ୍ତି ? ସୁଲି ତାଙ୍କୁ ଆଉ କିଛି କୁହାଇ ନଦେଇ ଘର ଭିତରକୁ ଟାଣିନେଇ ଛୁଆକୁ ଦେଖାଇଲା । ସେ କିଛି କହିବା ଆଗରୁ ଏକ ନିଶ୍ୱାସରେ ସୁଲି କାଲି ରାତିରେ ଘଟଣା ସବୁ ତାଙ୍କୁ ଗୋଟି ଗୋଟି କହିଗଲା । ସୁଲି ବୋଉ ବୟସ୍କା ବିଚାରବନ୍ତ ସ୍ତ୍ରୀ ଲୋକ । ଛୁଆଟିକୁ ସେ କୋଳକୁ ଉଠାଇନେଲେ । ସୁଲିକୁ କହିଲେ ମା ତୁ ଖିଆ ପିଆ କର । ମୁଁ ଛୁଆ ପାଖରେ ଅଛି । ମହେଶ୍ୱର ଆସିଲେ ମୁଁ ତାଙ୍କୁ ବୁଝାଇ ଦେବି । ମଣିଷ ଛୁଆଟିକୁ କିଏ କ'ଣ ଫୋପାଡ଼ି ଦିଏ । ସେ ତ ନିଜେ ଗୋଟେ ଅନାଥାଶ୍ରମ କରିଛି । ଅମାନିଆ ହେବ ନାହିଁ । ମୁଁ ପଖାଳ ଖାଇ ଆସିଛି । ବୋହୂ ତା ବାପ ଘରକୁ ଯାଇଛି । ଜଗବନ୍ଧୁକୁ ଖବର ପଠାଇ ଦେଇଛି ମୁଁ ଏଠାକୁ ଆସିଛି କହି ।

ବୋଉ ପାଖରେ ଛୁଆକୁ ଦେଇ ସୁଲି ଗଣ୍ଡେ ଖାଇଦେଲା । ମହେଶ୍ୱର ପାଇଁ ତା ମନ ଉଚ୍ଚାଟ ହୋଉଥାଏ । ଆଜି ଆସି ଏତେବେଳ ହେଲାଣି କୁଆଡ଼େ ଗଲେ ? ଭୋକିଲା ପେଟରେ ଆସି ଘରେ ଏ ପାଳା ଦେଖିଲେ କ'ଣ କରିବେ କେଜାଣି ! ସୁଲିର ସାହାସ ତା ବୋଉ ଅଛି । ତର ତର ହୋଇ ରୋଷେଇ ଘର କାମ ସାରି ବାହାରିଲା ବେଳକୁ ମହେଶ୍ୱର ଆସି ପହଞ୍ଚିଲା । ଦୁଆର ପାଖରୁ ପାଟି କଲା - ସୁଲି ଟିକେ ଚାହାକର ଏବେଯାଏ ଚାହା ଖାଇନି । ତା ପାଟି ଶୁଣି ସୁଲି ବୋଉ ବାହାରି ଆସିଲେ । ତାଙ୍କୁ ଦେଖି ନମସ୍କାର କରି ପଚାରିଲେ କେତେ ବେଳେ ଆସିଲେ ? ରୋଷେଇ ଦୁଆରେ ବସି ସେ ଚାହା ମୁଢ଼ି ଖାଇଲା, ଚାହାରେ ମୁଢ଼ି ଗଣ୍ଡେ ନ ପଡ଼ିଲେ ମହେଶ୍ୱରକୁ ଭଲଲାଗେ ନାହିଁ ।

ସୁଲି ଟିକେ ଦୂରରେ ଠିଆହୋଇ ପଚାରିଲା - ରାତିସାରା ଇଉବର୍ଷା ପବନ ତମେ କୁଆଡ଼େ ରହିଲ ? ଘରେ ମୁଁ ଏକୁଟିଆ । ଯା ହଉ ବୋଉ ଆଜି ସକାଳୁ ଆସି ପହଞ୍ଚିଲା । ମୁଁ ତାକୁ ଅଟକାଉଛି । ତମେ ଆଉ ଡ଼େରି କରିଥିଲେ ମୁଁ ମାଗୁଣିଆକୁ କ୍ଲବ ଘରକୁ ପଠାଇଥାନ୍ତି । ମହେଶ୍ୱର ସୁଲି ମୁହଁକୁ ଚାହିଲା । କହିଲା କାଲି ରାତିସାରା ପରା ଆମେ ଥାନାରେ ଥିଲୁ । ସେ ମତେ କ୍ଲବ ଘରେ କେଉଁଠୁ ପାଇଥାନ୍ତା ? ସୁଲି ଚମକି ପଡ଼ି କହିଲା - ମାଲୋ ଥାନା କାହିଁକି ? ତମେ କ'ଣ କରିଛ ସତ କୁହ ? ଆରେ ଆରେ ସେମିତି ଛାନିଆ ହଉଛୁ କାହିଁକି ? ଦାସିଆ ବାଉରୀ ଓ ତା ଭାଇ ମଧୁରା ଜମି ଗଣ୍ଡଗୋଳରୁ ମାଡ଼ ଗୋଳ ହେଇ ଦାସିଆ ତା ଭାଇକୁ କୋଦାଳରେ ପାହାରେ ପକାଇ ଆସି କ୍ଲବ ଘରେ ଲୁଚିଥିଲା । ଆମେ ଜାଣି ନାହୁଁ । ତା ଭାଇ



ଯାଇ ଥାନାରେ ରିପୋର୍ଟ ଲେଖାଇଲା । ପୋଲିସ ଆସି ସେଠି ଯେତେଥିଲେ ସମସ୍ତଙ୍କୁ ନେଇ ଥାନାରେ ପୁରାଉଥିଲେ, ଆଜି ସକାଳେ ସେ ଦୁହିଁଙ୍କ ଠାରୁ ଷ୍ଟେଟ୍‌ମେଣ୍ଟ ନେଇ ଆମକୁ ଛାଡ଼ିଲା । ମୁଁ ବିଲଆଡ଼େ ଟିକେ ଯାଇଥିଲି ତ ସେଥିପାଇଁ ଡେ଼ରି ହୋଇଗଲା । ଯାଏ ଏଥର ଗାଧୁଆ ପାଧୁଆ ସାରେ ।

ଏତିକି ବେଳେ ଛୁଆର କୁଆଁ କୁଆଁ କାନ୍ଦଶୁଣି ମହେଶ୍ୱର ସୁଲି ମୁହଁକୁ ଋହିଁଲା । ଏତିକି ବେଳେ ସୁଲି ବୋଉ ବାହାରି ଆସି କହିଲେ - ଆସ ଦେଖିବ ତମ ଘରେ ଗୋଟେ ନୂଆ ଲୋକ । ଘର ଭିତରକୁ ଯାଇ ମହେଶ୍ୱର ଛୁଆକୁ ଦେଖି କିଛି ପଋରିବା ଆଗରୁ ସୁଲି ଗତ ରାତିରୁ ସବୁ କଥା କହିଲା । ସବୁ ଶୁଣି ମହେଶ୍ୱର କହିଲା ବୁଝିଲି ଯେ କିନ୍ତୁ ଆମକୁ ଥାନାରେ ସବୁ ଜଣାଇ ଦେବାକୁ ହେବ । କାହା ଛୁଆ, କିଏ ପକାଇଛି ଆମେ ତ ଜାଣନ୍ତି ନାହିଁ । ପଛକୁ ଗଣ୍ଡଗୋଳ ରଖିବା ଭଲ ନୁହେଁ ।

ଡ଼ରି ଡ଼ରି ସୁଲି କହିଲା ପୋଲିସ ଯଦି ଛୁଆକୁ ଆମକୁ ନ ଦିଏ ? ମୁଁ କିନ୍ତୁ ଛୁଆକୁ ଦେବି ନାହିଁ । ଝଡ଼ ବର୍ଷା ରାତିରେ ଛୁଆକୁ ଯିଏ ରଖିଗଲା ସେ କ'ଣ ମାଆ ନା ରାକ୍ଷସୀ ? ମହେଶ୍ୱର ସୁଲିକୁ ବୁଝାଇ କହିଲା ସେମିତି କହିଲେ କ'ଣ ହେବ ? ତୁ ବ୍ୟସ୍ତ ହ ନାହିଁ । ଯାହା କରିବାର ମୁଁ କରିବି କହି ମହେଶ୍ୱର ବାହାରିଗଲା । ସୁଲିକୁ ଆଜି ମହେଶ୍ୱର କଥାବାର୍ତ୍ତା ବଡ଼ ମଧୁର ଲାଗିଲା । ସେ ବି ହଠାତ୍ ଛୁଆଟିକୁ ଦେଖି ଖୁସି ହେଇଛି ପିଲାପିଲା ନ ହେବାର ଦୁଃଖ ତା ମନକୁ ଛୁଉଁଥିଲା ବୋଧେ । କୁଆଡ଼େ ଗଲେ ? ସୁଲି ବ୍ୟସ୍ତ ହେଇ ତା ବୋଉକୁ ପଋରିଲା । ସେ କହିଲା ଥାନାକୁ ଯାଇଥିବ ବୋଧେ । ଯାଉ ଜଣାଇ ଦେବା ଉଚିତ ପିଲା କାହାର କିଏ ରଖିଚି ଜଣା ପଡ଼ିଲେ ସିନା ଯାହା କରିବ ? ଭଲ କରିଛି ନିଜ ଉପରକୁ ଦୋଷ ନବ କାହିଁକି ? ଜନ୍ମକଲା ପିଲାକୁ ଯିଏ ନଡ଼ା ଗଦାରେ ପକାଇ ଯାଇଛି ସେ କ'ଣ ଆଉ ପିଲା ନେବାକୁ ଆସିବ । ତୁ ବ୍ୟସ୍ତ ହ ନାହିଁ । ସେ ଫେରୁ ସବୁ ଜଣା ପଡ଼ିବ ।

ସତକୁ ସତ ଦୁଇ ଘଣ୍ଟା ଭିତରେ ମହେଶ୍ୱର ଫେରି ଆସିଲା । କହିଲା ଥାନାବାବୁ କହିଲେ ତମେ ଛୁଆଟିଏ ପାଇଛ ତମେ ରଖ, ବାପ ମାଆ ଜଣା ନାହିଁ । ଆମେ ଛୁଆକୁ ଆଣି ଥାନାରେ କ'ଣ ଛୁଆ ଖେଳେଇବୁ ? ରଖିବା ଲୋକର ପିଲା ଦରକାର ନାହିଁ । ତା ବାପା ମାଆ ପରିଚୟ ଦେଇ ଆସିଲେ ଆମେ ବୁଝିବୁ । ମହେଶ୍ୱରର ଥାନାବାବୁ ସହିତ ଭଲ ପରିଚୟ ଅଛି । ଗାଁରେ କିଛି ଅସହଣି ଲୋକ ତାର ବଦନାମ କରନ୍ତି । ତାର ସ୍ୱଚ୍ଛଳ ଅବସ୍ଥା ଦିଲ୍‌ଦାରିଆ ମିଜାସିକୁ ହିଂସା କରନ୍ତି । ଥାନାବାବୁ ଗାଁକୁ ଗଲେ ମହେଶ୍ୱର କୁକୁଡ଼ା ଗୋଟେ ଦିଟା ସହିତ ବୋତଲ ଦୁଇଟା ଧରାଇଦିଏ । ଥାନାଆଶ୍ରମର ପିଲାଗୁଡ଼ିକଙ୍କର ସୁବିଧା ଅସୁବିଧା ବେଳେ ସେମାନେ ତାଙ୍କୁ ଗାଡ଼ି ମଟର ସାଇକେଲ୍ ମଧ୍ୟ ଦିଅନ୍ତି । ତାଙ୍କୁ ଜଣାଇ ଆସି ମହେଶ୍ୱର ସବୁ କଥା ତା ବୋଉ ଓ ସୁଲିକୁ କହିଲା ।



ସ୍ୱାମୀ ଉପରେ ଯେତେ ରାଗ ରୋଷ ଥିଲା ସବୁ ଭୁଲିଯାଇ ସୁଲି ପୁଅକୁ ଆଣି ମହେଶ୍ୱର କୋଳରେ ଥୋଇଦେଲା । ସୁଲି ବୋଉ ପାଟିକରି ଉଠିଲେ । କହିଲେ - ତୋ ପୁଅକୁ ମତେ ଦେ । ସେ ସକାଳୁ କିଛି ଖାଇ ନାହିଁ ଯାଉ ଗାଧେଇ ପଡ଼ି ଗଣ୍ଡେ ଭାତ ଖାଉ । ତା ପରେ ଯାହା କଥାବାର୍ତ୍ତା କରିବୁ । ସତେତ ସୁଲି ତା ବୋଉ କୋଳରେ ଛୁଆକୁ ଦେଇ ଭାତ ବାଢ଼ି ଦେଲା ।

ସୁଲି ବୋଉ ଦୁଇଚାରିଦିନ ରହି ପିଲା ଯତ୍ନ ନବାର କିଛି ଉପଦେଶ ଦେଇ ତାଙ୍କ ଘରକୁ ବାହାରିଲେ । ମହେଶ୍ୱର ନିଜେ ତାଙ୍କୁ ଛାଡ଼ିବାକୁ ଗଲା । ସେ ମନା କରୁଥିଲେ କିନ୍ତୁ ମହେଶ୍ୱର କହିଲା ମୋର ତୁମ୍ଭପଦୀରେ କାମ ଅଛି । ତମେ ନ ଆସିଥିଲେ ବି ମୁଁ ଯାଇଥାନ୍ତି ।

ଯୋଇଁ ଆସିଛନ୍ତି ବୋଲି ସୁଲି ବୋଉ ବଡ଼ ଯତ୍ନରେ ରନ୍ଧାରନ୍ଧି କଲେ । ଯୋଇଁ କୁ ସେ ଭଲପାନ୍ତି । ଅସହଣୀ ଲୋକେ ତାଙ୍କ ନାମରେ ନାନା କଥା କହନ୍ତି କିନ୍ତୁ ସେ ସବୁ କାନରେ ପକାନ୍ତି ନାହିଁ । ତାର ମାନସମ୍ମାନ କଥାବାର୍ତ୍ତାରେ ତ୍ରୁଟି ସେ ଦେଖନ୍ତି ନାହିଁ । ସୁଲିର ଦେହପା ଭଲ ମନ୍ଦ ସବୁ ବୁଝେ । ସୁଲି ହୁଣ୍ଡିଟିଏ ଏଣ୍ଡେତେଣ୍ଡେ କଥା ଶୁଣି କଳିଗୋଳ କଲେ ମହେଶ୍ୱର ରାଗିଯାଏ । କେବେ କେମିତି ଚାପୁଡ଼ାଏ ମାରିଦିଏ । ସ୍ୱାମୀ ସ୍ତ୍ରୀଙ୍କ ଝଗଡ଼ା ସବୁ ଘରେତ ଅଛି । ସେ ଅନେକ ସମୟରେ ସୁଲିକୁ ବୁଝାନ୍ତି ।

ରନ୍ଧାବଢ଼ା ସାରି ମହେଶ୍ୱରକୁ ଖାଇବାକୁ ଡ଼ାକିଲା ବେଳେ ସେ କହିଲା - ବୋଉ ତମେ ବସ ମୋର କିଛି କଥା ତମକୁ କହିବାର ଅଛି । ଘରେ ସୁଲିଥିଲା ତା ଆଗରେ ମୁଁ ତୁମକୁ କିଛି କହିପାରି ନଥିଲି । ଏଠି ନଜଣାଇଲେ ମୋ ମନ ବୁଝିବ ନାହିଁ । ସୁଲି ବୋଉ ଚମକି ପଡ଼ିଲେ । ଯୋଇଁ କ'ଣ କହିବାକୁ ସାଙ୍ଗରେ ଆସିଛନ୍ତି ସେ ଭାବି ପାରିଲେ ନାହିଁ । ବଲବଲ ହେଇ ତା ମୁହଁକୁ ଚାହିଁଲେ । ତାଙ୍କ ଛାତି ଧଡ଼ଧଡ଼ ହେଉଥାଏ । ତାଙ୍କ ଚେହେରା ଦେଖି ମହେଶ୍ୱର କହିଲା - ମୁଁ କିଛି ଅପରାଧ କରିଛି ବୋଲି ଭାବ ନାହିଁ । ଏଇଠି ମୋ ପାଖରେ ବସ ମୁଁ କହୁଛି ।

କାଲି ରାତିରେ ମୁଁ ଘରକୁ ଫେରି ନଥିଲି କାହିଁକି ଜାଣ ? ସୁଲିକୁ ଯାହା ସବୁ କହିଲି ମିଛ କଥା । କାଲି ମୁଁ କ୍ଲବଘରୁ ଡ଼ମଣା ଆଶ୍ରମକୁ ଯାଉଥିଲି । ସେଠାରେ ପହଞ୍ଚି ଶୁଣିଲି ଗୋଟେ ପିଲାକୁ ଜର । ମାଳତୀ ମାଉସୀ ରାତିରେ ହଇରାଣ ହବବୋଲି ମୁଁ ତା ପାଇଁ ଔଷଧ ବିସ୍‌କୁଟ୍ ଆଣି ଦେଲି । ମାଉସୀ ସାଙ୍ଗରେ କଥାବାର୍ତ୍ତା ହେଇ ବାହାରିଲା ବେଳକୁ ମୁହଁ ସଂଜ, ଝିପି ଝିପି ବର୍ଷା ବି ପଡ଼ୁଥାଏ । ମୁଁ ତରତର ହେଇ ଟର୍ଚ୍ଚ ମାରି ମାରି ଆସୁଛି । ଦେଖିଲି ମହାଦେବଙ୍କ ମନ୍ଦିର ପାହାଚ ତଳକୁ ଗୋଟେ ବଡ଼ କାଳିଆ କୁକୁର ବସିଛି । ତା ସାମନାରେ କନା ଗୁଡ଼ା ହେଇ କ'ଣ ଗୋଟେ ପଡ଼ିଛି । ମୁଁ ଭାବିଲି କ'ଣ ଗୋଟେ ମଲା ଜନ୍ତୁ ହୋଇଥିବ । କୁକୁର ଓଟାରି ମହାଦେବଙ୍କ ପାହାଚରେ ପକାଇବ । ତାକୁ ତଡ଼ିବାକୁ ପାଖକୁ ଯାଇ ଦେଖିଲି ଛୁଆଟିଏ । ଆଖି ଦୁଇଟି ଛଡ଼ା କିଛି ଦିଶୁନି କିନ୍ତୁ ଗୋଡ଼ ହାତ ହଲୁଛି । କୁକୁରକୁ ଘଉଡ଼େଇ ମୁଁ ପୁଟୁଳି ସହିତ



ଟେକି ଆଣିଲି । ଛୁଆଟି କୁଆଁ କୁଆଁ ହେଲା । କ'ଣ କରିବି ମୁଁ କିଛି ସ୍ଥିର କରିପାରିଲି ନାହିଁ । ଆଶ୍ରମକୁ ନେଇଯିବି ଭାବିଲି । କିନ୍ତୁ ଦଶବାରଟି ପିଲାଙ୍କର କାମ ନେଇ ମାଳତୀ ଅନେକ ସମୟରେ ବିରକ୍ତ ହେଉଛି । ସେ ଜନ୍ମକଲା ପିଲାକୁ ସମ୍ଭାଳି ପାରିବ ନାହିଁ ବରଂ ବିରକ୍ତ ହେବ ।

ହଠାତ୍ ମୋର ସୁଲି କଥା ମନେପଡ଼ିଲା । ଆମର ପିଲା ପିଲି ନାହିଁ ବୋଲି ସେ ମନେ ମନେ କଷ୍ଟ ପାଏ କିନ୍ତୁ ମୁଁ ନିଜେ ଏଭଳି ଭାବରେ ଛୁଆଟିଏ ନେଇଗଲେ ସେ ନାନା ସଂଦେହ କରିବ । ମୁଁ ଜାଣିଥିଲି ରାତିରେ ସେ ଗାଇକୁ ନଡ଼ା ଦେବାକୁ ଆସିବ । ମାଗୁଣିଆ ଆସୁନାହିଁ । ତେଣୁ ମୁଁ ମନସ୍ଥିର କରି ଛପି ଛପି ଯାଇ ଆମ ଗୁହାଳ ଆଗ ନଡ଼ାଗଦା ଉପରେ ଛୁଆଟିକୁ ସୁଆଇ ଦେଲି । ସୁଲି କଣ କରୁଛି ଦେଖିବା ପାଇଁ ଗୁହାଳ ପଛପଟେ ବଡା ଫାଙ୍କରେ ଅନାଇ ରହିଲି । ସତକୁ ସତ ସୁଲି ଘଣ୍ଟାଏ ପରେ ଲଣ୍ଠଣ ଛତା ଧରି ଗୁହାଳ ପାଖକୁ ଆସୁ ଛୁଆର କାନ୍ଦ ଶୁଣି ତାକୁ ଟେକି ନେଇ ଯିବାରୁ ମୁଁ ନିଷ୍ଟନ୍ତ ହେଲି । ରାତିରେ ମୁଁ ଆଉ ଘରକୁ ନଫେରି କ୍ଲବ ଘରେ ଶୋଇପଡ଼ିଲି । ସକାଳୁ ଘରକୁ ଯାଇ ନିତ୍ୟକର୍ମ ସାରି ଗାଧୁଆ ସାରି ସାଧୁଆ ଦୋକାନରେ ଚାହା ପିଇ ବିଲଆଡ଼େ ଗଲି । ମୁଁ ଅନୁମାନ କରିଥିଲି ସୁଲି ନିଷ୍ଟୟ ତମକୁ ଡ଼କାଇବ । ସବୁ କଥା କହିବ । ସେ ମଧ୍ୟ ସେୟା କରିଛି । ଛୁଆଟି ଜାତି ଅଜାତି ଯାହାର ହଉ ମଣିଷ ପିଲାଟାଏ । ବଞ୍ଚି ଯିବ ସୁଲି ତାକୁ ପାଇ ଖୁସି ହେଉଛି ଦେଖି ମୁଁ ମଧ୍ୟ ଖୁସି ମୁଁ କ'ଣ କିଛି ଭୁଲ କରିଛି ବୋଉ ?

ସୁଲି ବୋଉଙ୍କ ଆଖିରୁ ଲୁହ ଗଡ଼ି ଆସିଲା । ମହେଶ୍ୱର ମୁଣ୍ଡରେ ହାତ ମାରି ସେ କଲ୍ୟାଣ କଲେ - ଅନାଥ ଛୁଆଟି ତମ ପିଲା ଜାଣ । ମାସେ ଯାଉ - ସତ୍ୟନାରାୟଣ ପୂଜାଟିଏ କରିବ । ମହାଦେବଙ୍କ ମନ୍ଦିର ଆଗରୁ ପାଇଛ ତା ନାଁ ଦବ - ଶଙ୍କର ।

ମୁଁ ଯାଉଛି ଭାତ ବାଢ଼ିବି ତମେ ଆସ ଖାଇ ବସିବ ।





# ରଜନୀଗନ୍ଧା

ଜୟନ୍ତୀର ରିକ୍ସା ଯାଇ ଗୋଟେ ବଡ଼ ଗେଟ୍ ଆଗରେ ଠିଆ ହେଲା । ଖାତା ବହିପତ୍ର ସବୁ ସିଟ୍‌ରେ ରଖି ଜୟନ୍ତୀ ତଳକୁ ଓହ୍ଲାଇ ରିକ୍ସା ବାଲାକୁ, 'ତୁମେ ଟିକେ ଅପେକ୍ଷା କର ରଘୁ ମୁଁ ଏଇ ଅଳ୍ପ ସମୟ ଭିତରେ ଆସୁଛି । ରଘୁ ଜୟନ୍ତୀର ଚିହ୍ନା ରିକ୍ସାବାଲା । ତା ଘର ପାଖର । ପ୍ରାୟ ବର୍ଷେ ଉପରେ ସେ ଜୟନ୍ତୀକୁ ନିଆ ଅଣା କରେ । ଜୟନ୍ତୀ ରେଭେନ୍ସା ଗାର୍ଲ ସ୍କୁଲର ହିଷ୍ଟ୍ରି ଟିଚର । ଛୁଟୀ ପରେ ତା ହେଡ୍‌ମିସ୍‌ଟ୍ରେସ୍ କହିଥିଲେ । "ଜୟନ୍ତୀ ତମ ଘର ତ ସୁଜାତା ଘର ବାଟରେ ପଡ଼ିବ । ତା ପାଖରେ କିଛି ପ୍ରଶ୍ନପତ୍ର ରହିଯାଇଛି । ସେ ପୁଣି ଚାରିଦିନ ଛୁଟୀରେ ରହିଛି । ତମେ ଟିକେ ନେଇ ଆସିପାରିବ । ମତେ ପୁଣି ସେ ସବୁ ଦେଖି ଛପାଇବାକୁ ଦବାକୁ ପଡ଼ିବ ।" ଜୟନ୍ତୀ ମନା କରିପାରିନଥିଲା । ସତକଥା କହିବାକୁ ଗଲେ ସୁଜାତା ସହିତ ତାର ଏତେ ଭଲ ସମ୍ପର୍କ ନାହିଁ । ଅନ୍ୟ ଶିକ୍ଷୟିତ୍ରୀମାନଙ୍କ ଅପେକ୍ଷା ସେ ଟିକେ ଅଲଗା । ସୁଜାତା ସହିତ ସେ ଏତେଟା ମିଶିପାରେ ନାହିଁ । ତା କଥାବାର୍ତ୍ତାରେ କେମିତି ଗୋଟେ ଗମ୍ଭୀରତା ।

ଜୟନ୍ତୀ ଅବଶ୍ୟ ଏଇ ବର୍ଷେ ହବ ଏ ସ୍କୁଲକୁ ଆସିଛି । ରାଧାନାଥ ଟ୍ରେନିଙ୍ଗ ସ୍କୁଲରେ ଥିବା ସମୟରେ ତାର ଏଇ ହେଡ୍‌ମିସ୍‌ଟ୍ରେସ୍‌ଙ୍କ ସହିତ ପରିଚୟ । ତାଙ୍କର ବହୁତ ସ୍ନେହ ଓ ଶ୍ରଦ୍ଧା ଥିଲା ଜୟନ୍ତୀ ପ୍ରତି । ତାଙ୍କରି ସୁପାରିଶ୍‌ରେ ସେ ଇତିହାସ ବିଭାଗର ଭେକେନ୍ସିରେ ଇଣ୍ଟରଭ୍ୟୁ ଦେଇ ଏଠି ବର୍ଷେ ହବ ଜଏନ କରିଛି । ବଡ଼ ସ୍କୁଲ ତା ଛଡ଼ା ଦରମା ପତ୍ର ଭଲ । ନୂଆ ନୂଆ ଏ ସ୍କୁଲକୁ ଆସି ତାକୁ ଭଲ ଲାଗୁନଥିଲା । କିନ୍ତୁ ତା ସାନଭାଇ ଜୟନ୍ତ ଆସି ରେଭେନ୍ସାରେ ପଢୁଥିଲା । ହଷ୍ଟେଲ ସିଟ୍ ନପାଇ ତାଙ୍କର ଜଣେ ଦୂର ସମ୍ପର୍କୀୟ ମାଉସୀଙ୍କ ଘରେ ରହିବାକୁ ପଡୁଥିଲା । ଜୟନ୍ତୀ ଆସିବା ପରେ ଭାଇ ଭଉଣୀ ଦୁହେଁ ଛତ୍ରବଜାରରେ ଗୋଟେ ଘରଭଡ଼ା ନେଇ ରହୁଛନ୍ତି । ଜୟନ୍ତୀ ସ୍କୁଲରୁ ଫେରିବା ଘରେ ଜୟନ୍ତ ପ୍ରାୟ କଲେଜରୁ ଆସି ପହଞ୍ଚେ । ଦୁହେଁ ଏଭଳି ବେଶ୍ ଖୁସିରେ ଚଳେଇ ନିଅନ୍ତି । ସ୍କୁଲ କଲେଜରୁ ଫେରିବା ପରେ ଜଳଖିଆ ଖାଇ ଦୁହେଁ ଦୁହିଁଙ୍କୁ ଅପେକ୍ଷା କରିଥାନ୍ତି ।



ସେଥିପାଇଁ ଜୟନ୍ତୀ ଗେଟ୍ ଖୋଲି ଉପରକୁ ପଶିଲା । ବିରାଟ ଦୋମହଲା ଘର । ସାମ୍ନାରେ ସୁନ୍ଦର ଫୁଲ ବଗିଚା । ଘରର ବାମ ପଟେ ଗ୍ୟାରେଜ । ଗ୍ୟାରେଜ କଡ଼ରେ ଗୋଟେ କୁକୁର ମୋଟା ଚେନ୍‌ରେ ବନ୍ଧା ହୋଇଛି । ଜୟନ୍ତୀର କୁକୁରକୁ ବଡ଼ ଡ଼ର । କ'ଣ କରିବ ଭାବୁଛି, ଏଇ ସମୟରେ କୁକୁରର ଖାଇବା ଧରି ଗୋଟେ ଲୋକ ଆସିଲା । ଜୟନ୍ତୀକୁ ଦେଖି କହିଲା ଯାଆନ୍ତୁ କିଛି ଅସୁବିଧା ନାହିଁ । ବାରଣ୍ଡାକୁ ଉଠି ଜୟନ୍ତୀ କଲିଙ୍ଗବେଲ୍ ମାରିଲା । ଦୁଆର ଖୋଲିବାର କିଛି ଶବ୍ଦ ନାହିଁ । ସେ ଡର ଡର ହେଉଛି । ରଘୁ ଅପେକ୍ଷା କରିଛି । ତା ଛଡ଼ା ତାକୁ ବି ଭୀଷଣ ଶୋଷ ହେଉଛି । ଜୟନ୍ତ କଲେଜରୁ ଫେରି ଅପେକ୍ଷା କରିଥିବ । ଅଥୟ ହେଇ ସେ ଆଉଥରେ ବେଲ୍ ମାରିବା ଆଗରୁ ଗୋଟିଏ ଲୋକ ଦୁଆର ଖୋଲି ପଚାରିଲା – "ଆପଣ ଜୟନ୍ତୀ ମ୍ୟାଡ଼ାମ୍ କି ? ଜୟନ୍ତୀ ମୁହଁରୁ ହଁ ଶୁଣି ସେ କହିଲା – ଉପରକୁ ଆସନ୍ତୁ । ମାଆ ସାନବୋହୂକୁ ଧରି ଡ଼ାକ୍ତର ପାଖକୁ ଗଲେ । ଆପଣଙ୍କ ଆସିବା କଥା ମତେ କହିଯାଇଥିଲେ । ମୁଁ କାଗଜପତ୍ର ଆଣୁଛି । ଆପଣ ଏଇ ଡ୍ରଇଁ ରୁମ୍‌ରେ ବସନ୍ତୁ । ଜୟନ୍ତୀ ଅନିଚ୍ଛା ସତ୍ତ୍ୱେ ଡ୍ରଇଂ ରୁମ୍ ଭିତରକୁ ପଶିଲା । ବେଶ୍ ସୁନ୍ଦର ଡ୍ରଇଁ ରୁମ୍‌ଟି । ସୋଫା, ଟିଭି ବିରାଟ ଆଲମିରାରେ ନାନା ପ୍ରକାର ବହି । ସେ ବସିବା ଭିତରେ ଚାକରଟି କାଗଜପତ୍ର ଓ ବହିଧରି ସୋଫାରେ ରଖିଲା । ପଛରେ ଆଉଜଣେ ସତର ଅଠର ବର୍ଷର ବାଳକ ହାତରେ ପାଣି ଗ୍ଲାସ୍ । ଜୟନ୍ତୀ ଟ୍ରେରୁ ଗ୍ଲାସଟି ନେଇ ପିଇବାକୁ ଯାଉଛି ତାର ଆଖି ପଡ଼ିଲା ଗୋଟେ ତୈଳଚିତ୍ର ଉପରେ । ଚନ୍ଦନ ପାଟି ସହିତ ଫୁଲମାଳ । ତଳେ ଷ୍ଟାଣ୍ଡରେ ଧୂପ ଓ ଦୀପ ଦାନୀ । ଜୟନ୍ତୀର ହାତରୁ ଗ୍ଲାସ ପଡ଼ି ଯାଉ ଯାଉ ଅଟକି ଗଲା । ସେ ଏକପ୍ରକାର ଚିତ୍କାର କରୁ କରୁ ରହିଗଲା – ପଚାରିଲା – "ଏ ଫଟ କାହାର ?" ବୟସ୍କ ଲୋକଟି ଫେରି ଆସିଥିଲା । ଜୟନ୍ତୀକୁ ଆଶ୍ଚର୍ଯ୍ୟ ହେଇ କିଛିକ୍ଷଣ ଚାହିଁ କହିଲ – "ଆମ ବାବୁ, ତିନି ଚାରିବର୍ଷ ତଳେ ଆକ୍ସିଡ଼େଣ୍ଟରେ ଚାଲିଯାଇଛନ୍ତି । କୁନାବାବୁ ବର୍ଷକର ହେଇଥିଲେ । ମାଡ଼ାମ ଆପଣ ଝାଳରେ ବୁଡ଼ିଗଲେଣି ଯେ – ଏ.ସି. ଖୋଲିଦେବି ? ନା ନା ଜୟନ୍ତୀ ଯେମିତି ଚେତା ଫେରିପାଇଲା । "ମୁଁ ଆସୁଛି କହି ସେ ଡର ଡର ହୋଇ କାଗଜପତ୍ର ଗୋଟାଇ ରିକ୍ସାକୁ ଫେରି ଆସିଲା । ରଘୁ ରିକ୍ସା ଚଳେଇବାକୁ ଆରମ୍ଭ କଲା ।

ହଁ କେତେ ବର୍ଷ ହବ ? ତିନି ଚାରିବର୍ଷ ପୂର୍ବ କଥା । ସେ ସମୟରେ ଜୟନ୍ତୀକୁ ଅଠର ଉଣେଇଶ ବର୍ଷ ହବ । ଗାଁରେ ରହି ମାଟ୍ରିକ୍ ପାଶ୍ ପରେ ଭଦ୍ରକରେ ଆସି କଲେଜରେ ପଢ଼ିଲା । ଜୟନ୍ତୀ ବାପା ଘନଶ୍ୟାମ୍ ବାବୁ ବାଘୁରାଇ ସ୍କୁଲର ଇଂରାଜୀ ଶିକ୍ଷକ ଥିଲେ । ଭଦ୍ରକ ଟାଉନ୍‌ରୁ ସ୍କୁଲ ବେଶ୍ ଦୂର । ଭାଇ ଭଉଣୀ ଯୋଡ଼ିଏ । ତା ଭାଇ ସାତ ଆଠ ବର୍ଷବେଳେ ଜୟନ୍ତୀ ମାଆ ମରିଯାଇଥିଲେ । ଜୟନ୍ତୀ ଓ ତା ଭାଇର ସୁବିଧା ପାଇଁ ଘନଶ୍ୟାମ ବାବୁ ଟାଉନ୍ ପାଖରେ ରିଟାୟାର୍ଡ଼ ହେବାପରେ ଖଣ୍ଡେ ଘର ଭଡ଼ା ନେଇଥାନ୍ତି । ଘନଶ୍ୟାମ ବାବୁଙ୍କର ଜଣେ ବିଧବା ଭଉଣୀ ତାଙ୍କ ପାଖେ ରହି ଜୟନ୍ତୀ ଓ ସାନ ଭାଇ ଜୟନ୍ତକୁ ଦେଖା ଦେଖି କରୁଥିଲେ । ଜୟନ୍ତୀ ଭାଇ ଆଇଏସ୍ ପାଶ୍ ପରେ ସେ ବିଏ ପଢୁଥାଏ ।



ଘନଶ୍ୟାମ ବାବୁ ରିଟାୟାର୍ଡ଼ ହେବା ପରେ ଆହୁରି କାମ ବଢ଼ି ଯାଇଥିଲା । ଦୁଇଓଳି ପିଲାଙ୍କ ଟିଉସନ୍ ସହିତ ଛୋଟ ପିଲାଙ୍କ ପାଇଁ କିଛି ଇଂରାଜୀ ଗପ ବହି ମଧ୍ୟ ସେ ଲେଖୁଥିଲେ । ସେ ସବୁରୁ ତାଙ୍କର ବେଶ୍ କିଛି ଆୟ ଥିଲା । ପେନସନ୍ ସହିତ ଏ ଅଧିକା ଆୟ କେବଳ ତାଙ୍କ ପିଲାଙ୍କ ପାଇଁ । ଭଦ୍ରକ ଟାଉନ୍‌ରୁ ତାଙ୍କ ଗାଁ ତିରିଶ ପଇଁତିରିଶ ମାଇଲ୍ । ଗାଁ ନା ଉଲଙ୍ଗ । ଗାଁରେ ଭଲ ଘର କିଛି ଜମିବାଡ଼ି ଅଛି । ବଡ଼ ଦୁଇଭାଇ ଥାନ୍ତି ଗାଁରେ । ବଡ଼ ଭାଇଙ୍କର ମାତ୍ର ଗୋଟିଏ ଝିଅ ପାଞ୍ଚ ବର୍ଷ ତଳୁ ବାହା ହୋଇଛି । ମଝିଆ ଭାଇର ମାତ୍ର ଗୋଟିଏ ପୁଅ ମୁକୁନ୍ଦ । ଓଭରସିଅର ପାଶ୍ କରି ହଦଗଡ଼ ଡ୍ୟାମରେ କାମ କରେ । ତାକୁ ଜୟନ୍ତୀ ବାପା ବଡ଼ ଭଲ ପାଆନ୍ତି । ଗାଁରୁ ସେ ଯିବା ଆସିବା କରେ ସତ କିନ୍ତୁ ଅଧିକାଂଶ ଦିନ ସେ ମୁକୁନ୍ଦକୁ ତାଙ୍କ ପାଖରେ ଅଟକାଇ ନିଅନ୍ତି । ଜୟନ୍ତୀ ଓ ଜୟନ୍ତ ଭାରି ଖୁସି ହୁଅନ୍ତି । ମୁକୁନ୍ଦ ଥିଲେ ସେମାନେ ତାଙ୍କ ସହିତ ସିନେମା କିମ୍ବା ହୋଟେଲକୁ ଯାଇ ଜଳଖିଆ ଖାଆନ୍ତି । ଘନଶ୍ୟାମ ବାବୁଙ୍କ ଇଚ୍ଛା ଜୟନ୍ତୀ ବିଏ ପରେ ବିଇଡ଼ି କରି ଶିକ୍ଷୟତ୍ରୀଟିଏ ହବ । ପୁଅ ମେଡ଼ିକାଲ ପଢ଼ିବ । ଝିଅ ପିଲାଙ୍କ ପାଇଁ ଶିକ୍ଷୟତ୍ରୀ ଚାକିରୀ ସବୁଠାରୁ ନିରାପଦ । ତାଙ୍କର ସବୁ ପରିଶ୍ରମ ଏ ଦୁଇଟି ପିଲାଙ୍କ ପାଇଁ ।

ସେଦିନ ଥାଏ ଶନିବାର । ଜୟନ୍ତୀର ଆଜିବି ମନେ ଅଛି । ମୁକୁନ୍ଦ ଅଫିସ୍‌ରୁ ଫେରି କହିଲା ଚାଲ ଆଜି ବାହାରେ ଖାଇ ଆସିବା । ମୁଁ ନ ଆସିଲେ ତୁ କୁଆଡ଼େ ବାହାରି ପାରୁନୁ । ଜୟନ୍ତ ଓ ଦାଦାଙ୍କ ପାଇଁ କିଛି ଜଳଖିଆ ନେଇ ଆସିବା । ଜୟନ୍ତର ଛୁଟୀ ପରେ ଟ୍ୟୁସନ ଥାଏ । ତା ପରେ ସେ କିଛି ସମୟ କ୍ରିକେଟ ଖେଳି ଫେରେ ।

ସେଦିନ ମୁକୁନ୍ଦ ଓ ଜୟନ୍ତୀ ବାହାରିଲେ । ବାଟରେ ଜୟନ୍ତୀ ପଚାରିଲା ଭାଇ ତମ କନିଆ ଦେଖା କଥା କ'ଣ ହେଲା? ବଡ଼ବୋଉ ଓ ଖୁଡ଼ୀ ଗଲେ କି ? ମୁକୁନ୍ଦ କହିଲା – ଦୂର୍ ପାଗଳ ହେଲୁ ? ତତେ ନନେଇ ସେମାନେ ଯିବେ ? ମୁଁ ମନା କରି ଦେଇଛି । କେଉଁଠି ଗୋଟେ ମୂର୍ଖ ମୁଷୁଣ୍ଡି ସିଂଗାଣି ନାକୀ ଦେଖି ଆସି କହିବ ବେଦୀରେ ବସ । ମୁଁ ମନା କରି ଦେଇଛି । ମୋ ଚାକିରୀଟା କନଫର୍ମ ହେଉ । ତୋ ପରୀକ୍ଷାଟା ସରିଯାଉ ଦେଖିବା । ଜୟନ୍ତୀ କହିଲା ତାହେଲେ ମୋ ସାଙ୍ଗରେ ତମେ ବି ଯିବ । ତମେ ତ ବାହାହବ ନା ! ହଉ ଦେଖିବା କହି ସେ କହିଲା – ଆମ ଡ୍ୟାମ୍ ପାଖରେ ଗୋଟେ ନୂଆ ସାଉଥ୍ ଇଣ୍ଡିଆନ୍ ହୋଟେଲ୍ ଖୋଲିଛି । ଚାଲ ଆଜି ସେଇଠିକୁ ଯିବା । ତତେ ଭଲ ଲାଗିବ ।

ଡ୍ୟାମ ତିଆରି ସ୍ଥାନ ଖୁବ୍ ବେଶୀ ଦୂର ନୁହଁ । ନୂଆ ନୂଆ କିଛି ଛୋଟ କ୍ୱାର୍ଟର ତିଆରି ହେଉଛି । ଏସ୍‌ଡ଼ିଓ ଓ କର୍ମଚାରୀମାନେ ରହନ୍ତି । ଟେଣ୍ଟ ପକାଇ କୁଲି ମିସ୍ତ୍ରୀ ମଧ୍ୟ ଗୁଡ଼ିଏ ରହିଛନ୍ତି । ଛୋଟ ବଡ଼ ଦୋକାନ କିଛି ବସିଛି ତାଙ୍କରି ଦରକାରୀ ଜିନିଷପତ୍ର ପାଇଁ । ଜୟନ୍ତୀ କେବେ କେମିତି ମୁକୁନ୍ଦ ସହିତ ଡ୍ୟାମ ଦେଖି ଆସିଛି । ତା ବାପା ମଧ୍ୟ ଅନେକ ସମୟରେ ଆସି ବୁଲିଯାଆନ୍ତି ।



ସେଦିନ ସମୟ ପ୍ରାୟ ପାଞ୍ଚଟା ହବ । ଅଫିସ୍ ଛୁଟୀ ବେଳ । ହୋଟେଲ୍ ବେଶ୍ ଭିଡ଼ଥାଏ । ମୁକୁନ୍ଦ ଓ ଜୟନ୍ତୀ ହୋଟେଲ୍‌ରେ ପଶି ଗୋଟେ ଟେବୁଲ୍‌ରେ ବସିବାକୁ ଯାଉଛନ୍ତି, ହଠାତ୍ ସାମ୍ନାରେ ଜଣେ ଯୁବକଙ୍କୁ ଦେଖି କହିଲେ - ସାର୍ ଆପଣ ? ଜୟନ୍ତୀ ଫେରି ଚାହିଁଲା । ଯୁବକ ଜଣକ ତାଙ୍କ ଆଡ଼କୁ ଚାହିଁ ହସୁଛନ୍ତି । ବୟସ ୨୭/୨୮ ହବ । ସଫାରଙ୍ଗ । ମୁଣ୍ଡରେ କୁଞ୍ଚକୁଞ୍ଚିଆ ବାଳ । ବେଶ୍ ଡେ଼ଙ୍ଗା, ପତଳା, ମୁକୁନ୍ଦଭାଇକୁ ଚାହିଁ ସେ ପଚାରିଲେ - "ଆଜି ଶନିବାର ତମେ ଗାଁକୁ ନଯାଇ କ'ଣ ଏଠି ? ସାଙ୍ଗରେ କିଏ । ଭାଇ କହିଲେ "ସାର ମୋ ସାନ ଭଉଣୀ । ଦାଦାଙ୍କ ଝିଅ । ଦାଦା ଏଇ ପାଖରେ ଘରଭଡ଼ା ନେଇ ଅଛନ୍ତି । ଭଉଣୀ ବିଏ ପଢୁଛି ଆଉ ସାନ ଭାଇଟି ଏଥର ମେଟ୍ରିକ୍ ପରୀକ୍ଷା ଦବ । ଏଥର ଭାଇ ମତେ ଚାହିଁ କହିଲେ - ଜୟନ୍ତୀ ଏ ସାର୍ ଆମ ନୂଆ ଏସ୍‌ଡ଼ିଓ । ଡ୍ୟାମ କାମ ପାଇଁ ଏଠାକୁ ଦୁଇମାସ ହବ ଆସିଛନ୍ତି । ଜୟନ୍ତୀ ତାଙ୍କୁ ନମସ୍କାର କଲା । ସେ କହିଲେ - ତା ହେଲେ ଆସ ଏକାଠି ଜଳଖିଆ କରିବା । ଜୟନ୍ତୀ ଟିକେ ଲାଜ କରୁଥିଲା କିନ୍ତୁ ମୁକୁନ୍ଦ ତାକୁ ଆଗକୁ କଢ଼େଇ ନେଲା । ତିନିହେଁ ଯାଇ ଗୋଟେ ଟେବୁଲ୍‌ରେ ବସିଲେ । ଭଦ୍ରଲୋକ ପଚାରିଲେ କ'ଣ ଅର୍ଡ଼ର ଦବା । ଦୋଷା, ଇଟିଲି ନା ଦହିବରା ? ମୁକୁନ୍ଦ କହିଲା ଯାହା ମଗାଇବେ ମଗାନ୍ତୁ ସାର୍ ଆମର ସବୁ ଚଳେ । ଜୟନ୍ତୀକୁ ଚାହିଁ ପଚାରିଲେ ଆଉ ଆପଣଙ୍କର ? ଝିଅମାନେ ଦହିବରା ବେଶୀ ଭଲ ପାଆନ୍ତି ତ । ମୁକୁନ୍ଦ କହିଲା - ସାର୍ ତାକୁ ଆପଣ କହୁଛନ୍ତି । ଇୟେ ବଡ଼ ଅନ୍ୟାୟ । ଭଦ୍ରଲୋକ ହସିଲେ । ଜଳଖିଆ ଆସିଗଲା । ମୁକୁନ୍ଦ ଓ ଭଦ୍ରଲୋକଙ୍କ କଥାବାର୍ତ୍ତା ଭିତରେ ଜୟନ୍ତୀ ଭାବୁଥାଏ ବାପା ଓ ଜୟନ୍ତ ପାଇଁ କେମିତି ଜଳଖିଆ ନବ । ଅଚିହ୍ନା ଲୋକଙ୍କ ଆଗରେ ଖାଇବାକୁ ଲାଜ ମାଡୁଥାଏ । କିନ୍ତୁ ପୁଣି ଭାବୁଥାଏ ସେ କଲେଜ ପଢୁଆ ଝିଅ । ଏଭଳି ଲାଜ କଲେ ଭଦ୍ରଲୋକ କ'ଣ ଭାବିବେ । ଜଳଖିଆ ପରେ ଚାହା ଆସିଲା । ଜୟନ୍ତୀ ଚାହା ପାଇଁ ମନା କଲା । ମୁକୁନ୍ଦ କହିଲା ସେ ଚାହା ଖାଏ ନାହିଁ ସାର୍ ।





ଏଥର ଭଦ୍ରଲୋକ ଜୟନ୍ତୀକୁ ଭଲ କରି ଚାହିଁଲେ । ପଚାରିଲେ ତମର କ'ଣ ବିଏ ଫାଇନାଲ ଇଅର ? ଜୟନ୍ତୀ ମୁଣ୍ଡ ହଲାଇଲା - ସେ ଆଉ କିଛି ପଚାରିବା ପୂର୍ବରୁ ମୁକୁନ୍ଦ କହିଲା - ସେ ମୋ ସାନ ଦାଦାଙ୍କ ଝିଅ ସାର୍ । ଦାଦା ଏଠିକା ବାଘୁରାଇ ସ୍କୁଲରେ ଇଂରାଜୀ ଶିକ୍ଷକ ଥିଲେ । ରିଟାୟର୍ଡ଼ କଲେଣି । ଭଲ ଶିକ୍ଷକତା ପାଇଁ ରାଷ୍ଟ୍ରପତି ପୁରସ୍କାର ମଧ୍ୟ ପାଇଛନ୍ତି । ଆମ ଗାଁ ଏଠାରୁ ତିରିଶ - ପଇଁତିରିଶ ମାଇଲ୍ ବାଟ । କିନ୍ତୁ ଦାଦା ସାନଭାଇ ଜୟନ୍ତ ଓ ଭଉଣୀ ପାଇଁ ଘର ଭଡ଼ା ନେଇ ଏଠାରେ ଅଛନ୍ତି । ମୋ ଖୁଡ଼ୀ ଅନେକ ଆଗରୁ ଗତ ହେଇଛନ୍ତି । ମୋର ଜଣେ ପିଉସୀ ଏମାନଙ୍କ କଥା ବୁଝାବୁଝି କରନ୍ତି । ମୋ ଦାଦା ବଡ଼ ଅମାୟିକ ଲୋକ । ମୁଁ ଥରେ ଆପଣଙ୍କୁ ଆମ ଘରଆଡ଼େ ବୁଲାଇ ନେଇଯିବି । ଆପଣ ତ ନୂଆ ଆସିଛନ୍ତି । ଏ କୁଲି ମିସ୍ତ୍ରୀଙ୍କ ମେଳରେ ବ୍ୟସ୍ତ ହୋଇପଡ଼ୁଥିବେ । ସୁବିଧା ହେଲେ କହିବେ ମୁଁ ଥରେ ଆପଣଙ୍କୁ ଆମ ଘରଆଡ଼େ ନେଇଯିବି ।

ଭଦ୍ରଲୋକ କହିଲେ ସୁବିଧା ଅସୁବିଧା ମୋର କ'ଣ ? କାଲି ତ ରବିବାର । ଚାଲ ଆଜି । ଜଳଖିଆ ଖାଇବା ତ ସରିଲା । ଏଥର ଗପସପ କରି କିଛି ସମୟ କଟାଇଲେ କ୍ଷତି କ'ଣ ? ବାହାରେ ମୋ ଜିପ୍ ଅଛି । ଆପଣ ବାଇକ୍ ଆଣି ନାହାନ୍ତି ତ ? - ନା ସାର, ପକେଟ୍‌ରୁ ମନିପର୍ସ କାଢ଼ି ଦବା ଭିତରେ ମୁକୁନ୍ଦ ଉଠିଗଲା । ମୁଁ ପଛରେ ଯାଉଛି ସାର୍ । ଆପଣ ଜୟନ୍ତୀକୁ ନେଇ ଗାଡ଼ିରେ ବସନ୍ତୁ । ଜୟନ୍ତୀ ଜାଣେ ମୁକୁନ୍ଦ ସେଇ ଅବସରରେ କିଛି ଜଳଖିଆ ଘରକୁ ନବାର ବନ୍ଦୋବସ୍ତ କରିବ । ଭଦ୍ରଲୋକ ଆଉକିଛି ନ କହି - ଜୟନ୍ତୀକୁ କହିଲେ - ଆ ଗାଡ଼ି ପାଖକୁ ଯିବା । ଜୟନ୍ତୀ ମୁକୁନ୍ଦକୁ ଚାହିଁ ତାଙ୍କ ପଛେ ପଛେ ଚାଲିଲା ।

ଘର ଆଗରେ ଜିପ୍‌ରୁ ତିନିହେଁ ଓହ୍ଲାଇ ଭିତରକୁ ପଶିଲେ । ଏକ ମହଲାର ତିନି ଚାରି ବଖୁରିଆ ଘର । ସାମ୍ନାରେ ବରଣ୍ଡା । ଘର ସାମ୍ନାରେ ଛୋଟ ଛୋଟ କୁଣ୍ଡରେ ନାନା ପ୍ରକାର ଫୁଲଗଛ । ଗଛଗୁଡ଼ିକ ଦେଖିଲେ ଘର ମାଲିକଙ୍କ ରୁଚି ଓ ମାନସିକତାର ପରିଚୟ ମିଳେ । ଘନଶ୍ୟାମ ବାବୁ ତାଙ୍କ ଦାଣ୍ଡ ଘରେ ସୋଫାରେ ବସି ଟିଭି ଦେଖୁଥିଲେ । ମୁକୁନ୍ଦ ଓ ଜୟନ୍ତୀ ସାଙ୍ଗରେ ଜଣେ ଅପରିଚିତ ଯୁବକଙ୍କୁ ଦେଖି ଉଠି ପଡ଼ିଲେ । ମୁକୁନ୍ଦ କହିଲା - ଦାଦା ଆମ ସାଙ୍ଗରେ ଜଣେ ନୂଆ ଲୋକ ଆସିଛନ୍ତି । ଚିହ୍ନେଇ ଦଉଛି । ଇଏ ଆମ ହଦଗଡ଼ ଡ୍ୟାମର ନୂଆ ଏସ୍.ଡ଼ି.ଓ, ବିଶ୍ୱରୂପ ଛୋଟରାୟ । ମୋର ବସ୍ । ସାର୍ - ଇଏ ହେଉଛନ୍ତି ମୋ ଦାଦା - ଘନଶ୍ୟାମ ଦାସ ।

ଘନଶ୍ୟାମ ବାବୁ ଖୁସି ହୋଇ କହିଲେ - ବସନ୍ତୁ ସାର୍ । ମୁଁ ପ୍ରାୟ ମଝିରେ ମଝିରେ ଡ୍ୟାମ୍‌ଆଡ଼େ ବୁଲିଯାଏ । କିନ୍ତୁ ମାସେ ଦେଢ଼ମାସ ହବ ସିଆଡ଼େ ଯାଇନାହିଁ । ମୋ ନିଜ କାମରେ ବ୍ୟସ୍ତ ରହିଯାଇଛି । ଆଗରୁ ଯେଉଁ ଭଦ୍ରଲୋକ ଥିଲେ ତାଙ୍କ ସହିତ କିଛିଟା ପରିଚୟ ହୋଇଯାଇଥିଲେ । ଏ ଭିତରେ ଏତେ ସବୁ ପରିବର୍ତ୍ତନ ହୋଇଗଲାଣି ମତେ ଜଣା ନାହିଁ । ହଁ



ହଁ ମନେ ପଡ଼ିଲା ସେ କହୁଥିଲେ ତାଙ୍କର ଏଇ ମାସେ ଦୁଇମାସ ଭିତରେ ରିଟାୟାର୍ଡ଼ମେଣ୍ଟ ହେବ ।

ବିଶ୍ୱରୂପ କହିଲେ – ମତେ ସାର୍ କୁହନ୍ତୁ ନାହିଁ । ମୁଁ ମୁକୁନ୍ଦ ବାବୁଙ୍କ ବନ୍ଧୁ ଭଳି । ତାଙ୍କ କଥାବାର୍ତ୍ତା ଭିତରେ ଜୟନ୍ତୀ ଭିତରକୁ ଚାଲିଯାଇଥିଲା । କିନ୍ତୁ ତା ବାପା ଓ ବିଶ୍ୱରୂପର କଥାବାର୍ତ୍ତା ତାକୁ ସବୁ ଶୁଣାଯାଉଥିଲା । ସେ କହୁଥାନ୍ତି ତାଙ୍କ ଘର କଟକରେ । ତାଙ୍କ ବାପା ଜଣେ ରିଟାୟାର୍ଡ଼ ଜଜ୍ । ତାଙ୍କର ମାତ୍ର ଗୋଟିଏ ସାନ ଭାଇ । ଡ଼ାକ୍ତରୀ ପଢୁଛି । ସେ କଟକ ହେଡ଼ ଅଫିସ୍‌ରେ ଦୁଇ ତିନି ବର୍ଷ ହେଲା ଥିଲେ । ଏଇ ରିଟାୟାର୍ଡ଼ ଜାଗାରେ ସେ ଏଠାକୁ ଦୁଇମାସ ହବ ଆସିଛନ୍ତି । ଭଦ୍ରକ ଛୋଟ ଜାଗା । କଟକ ପରି ଗହଳ ଚହଳ ନାହିଁ । ମନ୍ଦ ଲାଗୁନି କିନ୍ତୁ ବେଳେବେଳେ ଏକୁଟିଆ ଲାଗୁଛି । କୁଲି ମିସ୍ତ୍ରୀ ସିମେଣ୍ଟ ବାଲିକାମ ଦିନସାରା । ତା ପରେ ବଡ଼ ବୋର୍ ଲାଗୁଛି । ବସାରେ କେତେ ବହି ପଢ଼ିବ, ଟିଭି ଦେଖିବ ? ଆପଣମାନେ ଏଠାକାର ଲୋକ ସମସ୍ତଙ୍କ ସହିତ ପରିଚୟ ଥିବ । ସାଳନ୍ଦୀ କ୍ଲବ୍ ଆଡ଼େ ଦିନେ ଦିନେ ସନ୍ଧ୍ୟାବେଳେ ଯାଏ । କିନ୍ତୁ ସେଠି ତାସ୍ ଖେଳ ମତେ ଭଲ ଲାଗେନି । ଚଳିଯାଉଛି । ଆଜି ହୋଟେଲ୍‌ରେ ମୁକୁନ୍ଦ ବାବୁଙ୍କଠାରୁ ଆପଣଙ୍କ କଥା ଶୁଣି ଚାଲିଆସିଲି । ଭାବିଲି ଯିବା ଦେଖା କରି ପରିଚୟ ହୋଇଥାସିବା । ସମୟ ହେଲେ ଆପଣମାନେ ଯିବେ ସାର୍ ମୋ ବସାଆଡ଼େ ।

ହଁ ଯିବି । ଅବସର ନେଲାପରେ ମୋର ବିଶେଷ କିଛି କାମ ନାହିଁ । କିନ୍ତୁ ପିଲାଗୁଡ଼ିଏ ସକାଳଓଳି ମୋ ପାଖକୁ ପଢ଼ିବାକୁ ଆସନ୍ତି । ବରଂ ଆପଣ ଏକୁଟିଆ ଲୋକ, ଆମ ବସା ଦେଖିଲେ । ଯେତେବେଳେ ଇଚ୍ଛା ଚାଲିଆସିବେ । ଗପସପ କରିବା । ମଝିରେ ମଝିରେ ଖିଆପିଆ କରିଯିବେ କିନ୍ତୁ ନହେଲେ ଭଲ ଲାଗିବ ନାହିଁ । ବିଶ୍ୱରୂପ ହସିଲେ ।

ବିଶ୍ୱରୂପ ସହିତ ସେଇ ପ୍ରଥମ ପରିଚୟ । ମୁକୁନ୍ଦ ସହିତ କେତେବେଳେ ବା ଏକୁଟିଆ ସେ ଜୟନ୍ତୀ ଘରକୁ ଆସିବାକୁ ଲାଗିଲେ । ପନ୍ଦର ଦିନର ଯିବା ଆସିବା ପ୍ରାୟ ଚାରି ପାଞ୍ଚଦିନକୁ ଚାଲିଆସିଲା । ଘନଶ୍ୟାମବାବୁ ନଥିଲେ ଜୟନ୍ତୀ ଓ ଜୟନ୍ତ ସହିତ ଗପସପ କରି ଯାଆନ୍ତି । ଜୟନ୍ତକୁ ତାଙ୍କ ସହିତ ଗପ କରିବାକୁ ଭଲ ଲାଗେ । ବିଶ୍ୱରୂପ କଲେଜରେ ପଢ଼ିବାବେଳେ ଜଣେ ଭଲ କ୍ରିକେଟର ଥିଲେ ଜାଣିବା ପରେ ତାଙ୍କ ସହିତ ଗପ କରିବାର ଉତ୍ସାହ ଆହୁରି ବେଶୀ ବଢ଼ିଗଲା ଜୟନ୍ତର । ତାଙ୍କ ପାଖରୁ ନାନା ପ୍ରକାର ଖବର ଶୁଣିବାକୁ ତା ଆଗ୍ରହ । ସେଇ ଭିତରେ ଜୟନ୍ତୀ ଚାହା ଆଣିଦିଏ । କିଛି ସମୟ ବସି ତାଙ୍କ କଥାବାର୍ତ୍ତା ବି ଶୁଣେ ।

ଜୟନ୍ତୀ ପିଉସୀ କିନ୍ତୁ କେତେ ବି ବିଶ୍ୱରୂପ ଆଗକୁ ବାହାରନ୍ତି ନାହିଁ । ତାଙ୍କୁ ଅଚିହ୍ନା ଲୋକଙ୍କ ଆଗକୁ ଯିବାକୁ ଲାଜ ମାଡ଼େ । ଘର ଭିତରେ କବାଟ ଆଢୁଆଳରୁ ସେ କିନ୍ତୁ ବିଶ୍ୱରୂପକୁ ବେଶ୍ ଦେଖିପାରନ୍ତି । ପିଲାଟିକୁ ଦେଖିଲା ଦିନୁ ତାଙ୍କ ମନରେ ଏକ ପ୍ରକାର ସ୍ନେହ ଶ୍ରଦ୍ଧା



ଆସିଯାଇଛି । ଜୟନ୍ତୀ ସହିତ ପିଲାଟି ପାଇଁ ପ୍ରସ୍ତାବ ଦବାକୁ ସେ ଭାଇ ଓ ମୁକୁନ୍ଦକୁ କହିବାକୁ ମନେ ମନେ ଠିକ୍ କରିଛନ୍ତି । ସେଇ ଆଶାରେ ବିଶ୍ୱରୂପ ଆସିଲା ମାତ୍ରେ ସେ ଜୟନ୍ତୀ ଥିଲେ ଚାହା ଜଳଖିଆ ଦବାକୁ ଲଗାନ୍ତି । ଜୟନ୍ତୀ ତାଙ୍କ କଥା ରଖେ କିନ୍ତୁ ତା ପଢ଼ାପଢ଼ି ପାଇଁ ସେ ଗପସପରେ ଅଧିକ ସମୟ ଦେଇପାରେ ନାହିଁ ।

ଦିନେ ଦିନେ କଲେଜରୁ ଫେରି ଦେଖେ ବିଶ୍ୱରୂପ ଆସି ପହଞ୍ଚିଯାଇଛି । ଅବଶ୍ୟ ଏ ଭିତରେ ଜୟନ୍ତୀର ତା ସହିତ ମିଳାମିଶାଳ କିଛିଟା ବଢ଼ିଯାଇଛି । ତାକୁ ଦେଖି ବିଶ୍ୱରୂପ ପଚାରିଲା – ଆଜି ତମର ଏତେ ଡ଼େରି ଯେ ? କ'ଣ ରିକ୍ସା ପାଇଲ ନାହିଁ ନା ଚାଲି ଚାଲି ଆସିଲା ! – ନା ଚାଲି ଆସିଲି । ଜୟନ୍ତୀକୁ ସତ କଥା କହିବାକୁ ଲାଜ ମାଡ଼େ । କ୍ଲାସ ପରେ ଜୟନ୍ତୀ ପ୍ରାୟ ଘଣ୍ଟେ ଦି ଘଣ୍ଟା ଲାଇବ୍ରେରୀରେ କଟାଏ । ପଢ଼ାପଢ଼ି ତ କରେ ତା ଛଡ଼ା କିଛି ବହିରୁ ନୋଟ୍ କରି ଆଣେ । କଲେଜରେ ସବୁ ବହି ବହୁତ କମ୍ । ସବୁ କିଣି ହବନି । ତା ଛଡ଼ା ବାପାଙ୍କ ଉପରେ ଏତେ ଚାପ ଦବାକୁ ସେ ଚାହେଁନି । ଦୁଇଭାଇ ଭଉଣୀଙ୍କ ପାଠ ପଢ଼ା ପାଇଁ ରିଟାୟାର୍ଡ଼ ପରେ ତା ବାପାଙ୍କ ଅକ୍ଲାନ୍ତ ପରିଶ୍ରମ ସେ ଦେଖୁଛି । ଏ କଥା ସବୁ ସେ ବିଶ୍ୱରୂପକୁ କହିପାରିବ ନାହିଁ । ବିଶ୍ୱରୂପ ସହିତ ତାର ଅନ୍ତରଙ୍ଗତା କିଛିଟା ଏ ଭିତରେ ବଢ଼ିଯାଇଛି ସତ କିନ୍ତୁ ତାଙ୍କ ଘରର ପରିସ୍ଥିତି ସେ ତାକୁ କହିବାକୁ ଚାହେଁ ନାହିଁ ।

ଜୟନ୍ତୀ ତା ମନରେ ଦୁର୍ବଳତା କିଛିଟା ଅନୁମାନ କରି ପାରିଲାଣି କିନ୍ତୁ ସେ ସବୁ ତାର ଅତି ନିଜସ୍ୱ ଅନୁଭବ । ତାର ମନର କିଛି ପରିବର୍ତ୍ତନ ସେ ତା ବାପାଙ୍କୁ କେବେ ବି ଜଣାଇବାକୁ ଦେବନାହିଁ । ତା ବୋଉ ଚାଲିଗଲା ପରେ ତା ବାପା ତାକୁ କେତେ କଷ୍ଟରେ ପାଳିଛନ୍ତି ସେ ଜାଣେ । ତାଙ୍କ ମନରେ କଷ୍ଟ ହେଲାପରି କାମ ସେ କେବେ ବି କରିବ ନାହିଁ । ଜୟନ୍ତୀ ଅନେକ ସମୟରେ ଭାବେ ବିଶ୍ୱରୂପ ତାଙ୍କ ଘରକୁ ଏତେ ଆସୁଛନ୍ତି କାହିଁକି ? କେବଳ ମୁକୁନ୍ଦ ଓ ଜୟନ୍ତୀ ପାଇଁ ! ସମୟ କଟାଇବାକୁ ? ଜୟନ୍ତୀ ମନ ମାନେ ନାହିଁ । ସେ ଯାହା ବି ହେଉ ସେ ତା ମନର





ଦୁର୍ବଳତା ଲୁଚାଇ ରଖିବ । ତା ବାପାଙ୍କ ଇଚ୍ଛା ସେ ଗୋଟିଏ ଭଲ ଶିକ୍ଷୟିତ୍ରୀ ହେବ । ଜୟନ୍ତ ମେଡ଼ିକାଲରେ ପଢ଼ିବ । ତା ଭିତରେ ଏ ପ୍ରେମ ଭଳପାଇବାର ସ୍ଥାନ ନାହିଁ । ଜୟନ୍ତୀ ମନକୁ ବୁଝାଇବାକୁ ଚେଷ୍ଟା କଲା ।

ବିଶ୍ୱରୂପକୁ ଦେଖିବା ପରେ ତା ସହିତ ମିଳାମିଶା ଗପସପ କରି ଘନଶ୍ୟାମ ବାବୁଙ୍କର ତା ପ୍ରତି କେମିତି ଗୋଟେ ସ୍ନେହ ଶ୍ରଦ୍ଧା ସୃଷ୍ଟି ହୋଇଯାଇଛି । ଜୟନ୍ତୀ ପାଇଁ ପ୍ରସ୍ତାବ ପକାଇବାକୁ ସେ ଅନେକ ସମୟରେ ଚିନ୍ତା କରିଛନ୍ତି । କିନ୍ତୁ ସେ ଜାଣନ୍ତି ବିଶ୍ୱରୂପ ଧନୀ ଘରର ପିଲା । ତା ବାପା ଜଜ୍ ଥିଲେ । ତାଙ୍କର ଅନ୍ୟାନ୍ୟ ଖବର ସବୁ ତାଙ୍କୁ ଅଜଣା । ଆକାଶ କଇଁଆ ଚିଲିକା ମାଛ ପରି ସେ ହଟହଟା ହବାକୁ ଚାହାଁନ୍ତି ନାହିଁ । ଏ ସବୁ କଥା ସେ ମୁକୁନ୍ଦ ସହିତ କଥାବାର୍ତ୍ତା କରି ପାରନ୍ତେ କିନ୍ତୁ ତାଙ୍କର ଆର୍ଥିକ ସ୍ଥିତି ଓ ସାମାଜିକ ପରିସ୍ଥିତି ନେଇ ସେ ବିଶେଷ ଆଗେଇ ପାରିନାହାନ୍ତି । ଜୟନ୍ତୀର ପରୀକ୍ଷା ପରେ ସେ କିଛି ଗୋଟେ ସ୍ଥିର କରିବେ ଭାବିଛନ୍ତି ।

ଜୟନ୍ତୀର ପରୀକ୍ଷା ଆରମ୍ଭ ହୋଇଗଲା । ବିଶ୍ୱରୂପ ଆସିଲେ ମଧ ସେ ତା ପାଇଁ ବେଶୀ ସମୟ ଦେଇପାରେ ନାହିଁ । ପଦେ ଦି'ପଦ କଥାବାର୍ତ୍ତା ପରେ ସେ ଉଠିଯାଏ ତା ପାଠପଢ଼ା ପାଖକୁ । ବିଶ୍ୱରୂପ ଜାଣେ, ସେ ଘନଶ୍ୟାମ ବାବୁଙ୍କ ସହିତ କିଛି ସମୟ କଟାଇ ଚାଲିଯାଏ । ଦିନେ ପରୀକ୍ଷା ସାରି କଲେଜରୁ ବାହାରି ଦେଖିଲା ବେଶ୍ ବର୍ଷା । ଆଖପାଖରେ ରିକ୍ସା ବି ନାହିଁ । କୌଣସି ମତେ ଛକପାଖକୁ ଗଲେ ହଠାତ୍ ଖଣ୍ଡେ ରିକ୍ସା ମିଳିପାରେ । ଜୟନ୍ତୀ ସେଇ ଆଶାରେ କାନ୍ଧରେ ବ୍ୟାଗ ଝୁଲାଇ ଗେଟ୍ ପାଖକୁ ଆସୁଛି, ଦେଖିଲା ଗୋଟେ ଜିପ୍ ଆସି ଠିଆ ହେଲା । ବିଶ୍ୱରୂପ ଓହ୍ଲାଇ ଆସି କହିଲା - ମୁଁ ଟାଉନ୍‌କୁ ଆସି ଏଇବାଟେ ଫେରୁଥିଲି । ତମକୁ ଦେଖି ଆସିଲି । ବର୍ଷା ବେଶ୍ ଜୋର୍‌ରେ ହେଲାଣି, ଆସ ଗାଡ଼ିରେ ବସ ମୁଁ ଘରେ ଛାଡ଼ିଦେବି । ମନା କରିବାର ଉପାୟ ନାହିଁ । ବର୍ଷାରେ ତିନିବାର ଭୟ । ଅଗତ୍ୟା ଜୟନ୍ତୀ ଯାଇ ଗାଡ଼ିରେ ବସିଲା । ବିଶ୍ୱରୂପ ପଚାରିଲା - "ପରୀକ୍ଷା କେମିତି ହେଲା ? ସରିଲାଣି ନା ଆଉ କିଛି ଦିନ ଚାଲିବ ?" ଜୟନ୍ତୀ କହିଲା - ନାଁ ଆଉ ଗୋଟେ ପେପର ଅଛି । ଦୁଇଦିନ ପରେ । ଏତିକି ଛଡ଼ା ଆଉକିଛି କହିବାର ନଥିଲା ଜୟନ୍ତୀର । ସେ ଚୁପ୍‌ଚାପ୍ ବସି ରହିଲା । ବିଶ୍ୱରୂପ ସହିତ ଏକୁଟିଆ ବସି ଗପସପ କରିବାର ସୁଯୋଗ ସେ ଖୋଜି ନାହିଁ । କାରଣ ସେ ଜାଣେ । ବିଶ୍ୱରୂପ ପାଇଁ ତା ମନତଳେ ଯେଉଁ ଦୁର୍ବଳତା ଅଛି ସେ କିଛି କିଛି ଅନୁମାନ କରିପାରେ । ଆଜି ଏକୁଟିଆ ତା ସହିତ ଜିପ୍‌ରେ ଆସିବାକୁ ତାକୁ ବଡ଼ ସଂକୋଚ ଲାଗୁଥାଏ । ତା ଛଡ଼ା ମୁକୁନ୍ଦ ଭାଇ ଓ ତା ବାପାଙ୍କ କଥାବାର୍ତ୍ତା ସେ କିଛି କିଛି ଶୁଣିଛି । ମୁକୁନ୍ଦ ଭାଇ ବାପାଙ୍କୁ କହୁଥିଲେ ବିଶ୍ୱରୂପ ବାବୁଙ୍କୁ ପଚାରିଲେ ହୁଅନ୍ତା କିନ୍ତୁ ଜେଜିର ବିଇଡ଼ି ସବୁ ବୁଝିବା । ତା ପୂର୍ବରୁ ଜେଜିର ମତ ଜାଣିବା ଦରକାର । ଆମ ଝିଅ ସୁନ୍ଦର । ପାଠଶାଠ ପଢ଼ିଛି । ତା ମତ ନ ନେଇ ଆମେ କେଉଁଠି କରିଦେବା ଠିକ୍ ହବନି ଦାଦା । ଅନି ଅପାକୁ ସତର ଅଠର ନ ହେଉଣୁ ବଡ଼ବାପା ତର ତର ଦେଇ



ବାହାକରି ଦେଲେ । ସେ ମଧ୍ୟ ପଢ଼ାପଢ଼ିରେ ମନ ଦେଲା ନାହିଁ । ତା ଶାଶୁ ଘରେ କି ଅବସ୍ଥା ହଉଥିଲା ତମେ ତ ନିଜେ ଜାଣ ଦାଦା, ସେ ଯଦି ଦୁଇତିନି ବର୍ଷ ପରେ ତା ବର ସହିତ ଯାଇନଥାନ୍ତା ତା ଅବସ୍ଥା କ'ଣ ହୋଇଥାନ୍ତା ଭାବିପାରୁଛ ! ଜେନିଟା ଆମର ସୁନ୍ଦର ଝିଅ । ପାଠ ଭଲ ପଢୁଛି । ଆଉ କିଛି ବର୍ଷ ଯାଉ । ତାର କେଉଁଠି ଚାକିରୀ ଚାକିରୀ ଗୋଟେ ହଉ । ବହୁତ ପାତ୍ର ମିଳିବେ । ବିଶ୍ୱରୂପ ଭଲ ପିଲାଟିଏ ପରି ଜଣା ପଡୁଛି ସତ କିନ୍ତୁ ତା ପରିବାର ବିଷୟରେ ଆମେ କିଛି ଜାଣନ୍ତି ନାହିଁ । ତା ବାହାଘର କେଉଁଠି ଠିକ୍ ହେଉଛି କି ନାହିଁ ଜଣା ନାହିଁ । ତମେ ତର ତର ହୁଅ ନାହିଁ । ଚିନ୍ତା କର ନାହିଁ । ତା ପାଇଁ ପ୍ରସ୍ତାବ ମିଳିବ । ଜୟନ୍ତୀର ସେ ସବୁ କଥା ମନେ ପଡୁଥିଲା ।

ହଠାତ୍ ଜିପ୍‌ର ବ୍ରେକ୍‌ରେ ଜୟନ୍ତୀର ଧ୍ୟାନ ଭାଙ୍ଗିଗଲା । ବିଶ୍ୱରୂପ ପଚାରିଲା - ସେତେବେଳୁ ଦେଖୁଛି ତମେ ଯେମିତି କ'ଣ ସବୁ ଭାବୁଛ ? ମତେ କହିବାରେ ଆପତ୍ତି ଅଛି । ବିଏ ପରେ କ'ଣ ପଢ଼ିବ ସେଇ କଥା ବୋଧେ ? ତମର ବାପାଙ୍କ ଇଚ୍ଛା ବି.ଇଡ଼ି କରିବାକୁ । ତମେ ଜଣେ ଭଲ ଶିକ୍ଷୟିତ୍ରୀ ହୋଇପାରିବ । ସେଇ ସବୁ କଥା ନୁହଁ ? "ଜୟନ୍ତୀ କହିଲା - ନା ସେ ସବୁ ନୁହେଁ । ଭାବୁଛି ଆପଣଙ୍କ ସହିତ ଦେଖା ହୋଇନଥିଲେ ବର୍ଷାରେ ନିର୍ଘାତ ତିନ୍ତିଥାନ୍ତି । ବାଟରେ ଖଣ୍ଡେ ବି ରିକ୍ସା ଦେଖୁନାହିଁ । ବିଶ୍ୱରୂପ କହିଲା ମିଛ କଥା । ଏଥିପାଇଁ ଏତେ ଚୁପ୍‌ଚାପ୍ ଗମ୍ଭୀର ହୋଇ ବସିବା - "ଆଛା ମୁଁ କହିବି କ'ଣ ଭାବୁଛ ?" ଜୟନ୍ତୀ ବିଶ୍ୱରୂପ ମୁହଁକୁ ଚାହିଁଲା । କହିଲା ଆପଣ ତ ସାଇନ୍ସ ଛାତ୍ର । ସାଇକୋଲୋଜି ପଢ଼ିନାହାନ୍ତି । ଆଛା କହିଲେ ଦେଖି କହି ହସିଲା । ବିଶ୍ୱରୂପ ଜୟନ୍ତୀକୁ ଚାହିଁ ହସି ହସି କହିଲା -ଏଇଥିପାଇଁ କହୁଥିଲି । ଗାଡ଼ିରେ ବସିବା ପରଠୁ ତମ ମୁହଁ ଯେମିତି ଗମ୍ଭୀର ଥିଲା ନାଁ ମୁଁ ଡ଼ରି ଯାଇଥିଲି - ଆପଣଙ୍କ ସହିତ ମୁକୁନ୍ଦ ଭାଇଙ୍କ ଜରିଆରେ ଏଇ ତିନି ଚାରିମାସର ପରିଚୟ । ତା ଭିତରେ ଆପଣ ଅବଶ୍ୟ ଆମ ଘରକୁ କେତେଥର ଆସିଲେଣି । ଆପଣମାନେ ସମସ୍ତେ ମିଶି ଗପସପ କରନ୍ତି । ମୁଁ ଆଉ ଅଧିକ କ'ଣ କହିବି ଆପଣଙ୍କୁ ? ବିଶ୍ୱରୂପ କହିଲା - ଠିକ୍ ଅଛି । ମୁଁ ଏଥର ମୁକୁନ୍ଦ ବାବୁଙ୍କୁ କହିବି ତମକୁ ସାଙ୍ଗରେ ଧରି ମୋ ବସା ଆଡ଼େ ଆସିବେ ଥରେ । ମୋ ଘରଦ୍ୱାର ଦେଖିଯିବେ । ଆସିବତ ? ଜୟନ୍ତୀ କହିଲା ମୋ ପରୀକ୍ଷା ସରୁ ଯିବି ।

ଏଇ କଥାବାର୍ତ୍ତା ଭିତରେ ଗାଡ଼ି ଆସି ଜୟନ୍ତୀ ଘର ଗେଟ୍ ପାଖରେ ରହିଲା । ଜୟନ୍ତୀ ଗାଡ଼ିରୁ ଓହ୍ଲାଇ ଓହ୍ଲାଇ କହିଲା - ଆପଣ ଆସନ୍ତୁ ନା ବାପା ଥିବେ । ଗପସପ କରି ଚାହା ପିଇ ଯିବେ । ଆପଣ ତ ନିଜେ କହୁଛନ୍ତି ଘରେ ଏକୁଟିଆ । ଏଠି ବସିଲେ କ୍ଷତି କଣ ? ବିଶ୍ୱରୂପ କହିଲେ - ନା ଥାଉ ଆଜି ମୋର ଟିକେ କାମ ଅଛି । ପରେ ଆସିବି କହି ବିଶ୍ୱରୂପ ଗାଡ଼ି ଚଲେଇ ନେଲା । ଘର ଭିତରକୁ ପଶିଲା ବେଳକୁ ତା ବାପା ପଚାରିଲେ ଏ ବର୍ଷାରେ କେମିତି ଆସିଲୁ ? ବାହାରେ ଗୋଟେ ଗାଡ଼ି ରହିବା ଶବ୍ଦ ହେଲା । କିଏ ତୋ ସାଙ୍ଗ ? କାହିଁକି କେଜାଣି



ଜୟନ୍ତୀକୁ ଲାଜ ମାଡ଼ିଲା । କିନ୍ତୁ ବାପାଙ୍କୁ ମିଛ କହିବାର ସାହସ ତାର ନାହିଁ । ସେ ଡ଼ରି ଡ଼ରି କହିଲା ନାଁ ବାପା ବିଶ୍ୱରୂପ ବାବୁ ବର୍ଷା ଯୋଗୁ ଛାଡ଼ିଗଲେ । ସେ ଟାଉନ୍‌ରୁ ସେଇବାଟେ ଫେରୁଥିଲେ । "ଭଲ ହେଲା, ତାଙ୍କୁ ଭିତରକୁ ଡ଼ାକିଲୁ ନାହିଁ ? ତାଙ୍କ କାମ ଅଛି । ଆସିଲେ ନାହିଁ କହି ଜୟନ୍ତୀ ଭିତରକୁ ଚାଲିଗଲା ।"

ଏ ଭିତରେ ଦଶବାର ଦିନ ବିତି ଗଲାଣି । ଜୟନ୍ତୀର ପରୀକ୍ଷା ସରିଯାଇଛି । ମୁକୁନ୍ଦ ତାକୁ ଗାଁକୁ ଦଶବାରଦିନ ପାଇଁ ନେଇ ଯାଇଥିଲା । କିନ୍ତୁ ଘନଶ୍ୟାମ ବାବୁ ଖବର ଉପରେ ଖବର ପଠାଇଲେ । ନେଇ ଆସିବାକୁ । ପିଲାଙ୍କୁ ଛାଡ଼ି ସେ ରହିପାରନ୍ତି ନାହିଁ । ଜୟନ୍ତ ସ୍କୁଲ ଗଲା ପରେ ତାଙ୍କୁ ଏକୁଟିଆ ଲାଗେ । ଜୟନ୍ତୀର ପରୀକ୍ଷା ସରିଛି । ସେ ତାଙ୍କ ବହିପତ୍ର ଲେଖାଲେଖି କାମରେ କିଛିଟା ସାହାଯ୍ୟ କରିବ । ତେଣୁ ମୁକୁନ୍ଦ ସହିତ ଜୟନ୍ତୀ ଫେରିଆସି ତା ବାପାଙ୍କ କାମରେ ଲାଗିଗଲା ।

ଦୁଇ ଚାରିଦିନ ପରେ ହଠାତ୍ ଦିନେ ଖରାବେଳେ ମୁକୁନ୍ଦ ଆସି କହିଲା – ଦାଦା ଶୁଣିଲି ବିଶ୍ୱରୂପ ବାବୁଙ୍କ ଦେହ ଭଲ ନାହିଁ । କାଲି ରାତିରୁ ଭାରି ଜର । ଭଦ୍ରଲୋକ ଏଠି ଏକୁଟିଆ । ଯିବାକି ଟିକେ ଦେଖିଆସିବା । ଘନଶ୍ୟାମବାବୁ କହିଲେ ହଁ  ଯାଆନ୍ତି ଯେ – ଆଜି ପିଲାଗୁଡ଼ିକୁ ପଢ଼ିବାକୁ ଆସିବା ପାଇଁ କହି ରଖିଛି । ଟେଷ୍ଟ ପରୀକ୍ଷା ମୁଣ୍ଡ ଉପରେ । ତୁ ଗୋଟେ କାମ କର । ଜେଜିକୁ ନେଇ ଯା ସଙ୍ଗରେ । ଜୟନ୍ତ ସ୍କୁଲରୁ ଫେରିଲେ ମୁଁ ତାକୁ ପଠାଇଦେବି । ତୋର ଫେରିବା ଡ଼େରି ହେଲେ ଜୟନ୍ତ ତାକୁ ନେଇ ଚାଲିଆସିବ । ଭଦ୍ରଲୋକଙ୍କ ପାଖରେ କେହି ଜଣେ ରହିବା ଦରକାର ।

ବିଶ୍ୱରୂପ କଥା ଶୁଣି ଜୟନ୍ତୀ କେମିତି ଟିକେ ବ୍ୟସ୍ତ ହୋଇପଡ଼ିଥିଲା । ମାତ୍ର କେଇମାସରେ ପରିଚୟ ଭିତରେ ସେ କ'ଣ ଏତେ ନିକଟରେ ହୋଇଯାଇଛି ? ନିଜ ମନକୁ ପଚାରେ ଜୟନ୍ତୀ । ତେବେ କାହିଁକି ଏ ଉତ୍କଣ୍ଠା, ଏ ଆକୁଳତା ତାଙ୍କ ପାଇଁ । ନାଁ ହୁଏତ ସେ ସବୁକିଛି ନୁହଁ । ବାପାଙ୍କ କହିବା କଥାରେ ମୁକୁନ୍ଦ ଭାଇ ସହିତ ଯେ ଯାଉଛି । ତା ଛଡ଼ା ଜଣେ ପରିଚିତ ଭଦ୍ରଲୋକଙ୍କ ଅସୁସ୍ଥତାରେ ଦେଖିଯିବା କ୍ଷତି କ'ଣ ? ଜୟନ୍ତୀ ଲୁଗାପଟା ବଦଳାଇ ମୁକୁନ୍ଦ ସହିତ ବାହାରିଗଲା । ଦୁହେଁ ଗପସପ କରି ଡ୍ୟାମ୍ ପାଖରେ ପହଞ୍ଚିଗଲେ । ଡ୍ୟାମ କଡ଼ ଦେଇ ଗୋଟେ ନାଲି ରାସ୍ତା । କିଛିବାଟ ଗଲାପରେ ଗୋଟେ ଛୋଟ ଘରର ଗେଟ୍ ଖୋଲିଲା ମୁକୁନ୍ଦ । ଭିତରକୁ ଯାଇ କବାଟ ପେଲିଲା ମାତ୍ରେ କବାଟ ମେଲା ହେଇଗଲା । ଜଣା ପଡ଼ୁଥାଏ ଦାଣ୍ଡଘର । ସୋଫା, ଟେବୁଲ ଦୁଇ ଚାରିଟା ପ୍ଲାଷ୍ଟିକ ଚେୟାର । ଗୋଟେ କୋଣକୁ ଛୋଟ ଫ୍ଲାୱାର ଭେସ୍ ଉପରେ କିଛି ଫୁଲଗଛ । ମୁକୁନ୍ଦ ଡ଼ାକିଲେ – ବିଶ୍ୱରୂପ ବାବୁ – ତାଙ୍କ ପାଟି ଶୁଣି ଭିତରୁ ଶୁଭିଲା – କିଏ ମୁକୁନ୍ଦ ବାବୁ ଆସନ୍ତୁ ଆସନ୍ତୁ । ଜୟନ୍ତୀ ଓ ମୁକୁନ୍ଦ ଘର ଭିତରକୁ ଗଲେ । ଦେଖିଲେ ବିଶ୍ୱରୂପ ଖଟରେ ଶୋଇଥିଲେ ତାଙ୍କୁ ଦେଖି ଉଠି ବସିଲେ । ପଚାରିଲେ ଆପଣମାନେ କିପରି ଜାଣିଲେ । ଅଫିସ୍‌ରୁ ବୋଧେ ? ମୁଁ ଛୁଟି ଦରଖାସ୍ତ ପଠାଇଥିଲି ।



ହଁ, ଦାଦା ଆସିଥାନ୍ତେ । ଆସିପାରିଲେ ନାହିଁ । ମୁଁ ଜୟନ୍ତୀ ଚାଲିଆସିଲୁ । ଭଲ କଲେ । ବିଛଣାରେ ପଡ଼ି ଏକୁଟିଆ ବଡ଼ ବୋର୍ ଲାଗୁଥିଲା । ସେଇ ଚେୟାରରେ ବସନ୍ତୁ ଆପଣମାନେ । ମାଧବକୁ ବର୍ତ୍ତମାନ ବଜାରକୁ ପଠାଇଛି କିଛି ଔଷଧ ଓ ଅନ୍ୟାନ୍ୟ ଜିନିଷ ଆଣିବାକୁ । ଆଉ ଜୟନ୍ତ ? ସେ ସ୍କୁଲରୁ ଫେରିନି ବୋଧେ ? ଆସିବ ତ ? ତା ଖେଳ ଖବର ଶୁଣିବାକୁ ଭଲ ଲାଗେ ।

ସ୍କୁଲରୁ ଫେରି ସେ ଆସିବ ଦାଦା କହିଛନ୍ତି । ବିଶ୍ୱରୂପ ବ୍ୟସ୍ତ ହେଇପଡ଼ିଲେ । ସ୍କୁଲରୁ ଫେରି ଆସିବ । ତାକୁ ତ ଭୋକ ଲାଗୁଥିବ । କ'ଣ ଖାଇବ ସେ ? ମୁକୁନ୍ଦ ବାବୁ ବାହାରେ ଟିକେ ଦେଖିଲେ ମାଳି ଫାଳି କିଏ ଅଛନ୍ତି କି ? ଜଳଖିଆ କିଛି କିଣି ଆଣିବ । ମାଧବ ନାନା ବୁଢ଼ା ଲୋକ, ଚାଲି ଚାଲି ଯାଇଛି । ନିଶ୍ଚୟ ଡେରି କରିବ ଫେରିବାକୁ ।

ମୁକୁନ୍ଦବାବୁ ବାହାରି ଫେରିଯାଇ କହିଲେ - ନାଁ ସାର୍ କେହି ନାହାଁନ୍ତି, ଆପଣ ବସନ୍ତୁ । ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ନେଇ ଆସୁଛି । ବିଶ୍ୱରୂପ ତକିଆ ତଳୁ ଖଣ୍ଡେ ଶହେ ଟଙ୍କିଆ ନୋଟ୍ ତାଙ୍କ ହାତକୁ ବଢ଼ାଇ ଦେଲେ । ମୁକୁନ୍ଦ ବାବୁ କିଛି କହିବା ପୂର୍ବରୁ ସେ କହିଲେ ମୁଁ ଜାଣେ ତମ ପାଖେ ଟଙ୍କା ଅଛି । କିନ୍ତୁ ତମେ ସବୁ ଆଜି ମୋ ଅତିଥି । ନିଅ ଶୀଘ୍ର ନେଇ ଆସ । ମୁକୁନ୍ଦ ବାବୁ ଯିବା ପରେ ପରେ ଜୟନ୍ତୀ ମଧ ଉଠି ଠିଆ ହେଲା । କହିଲା - ଆପଣ ରେଷ୍ଟ ନିଅନ୍ତୁ ମୁଁ ବାହାରେ ବଗିଚାରେ ବୁଲୁଚି । ମୁକୁନ୍ଦ ଗଲାପରେ ଜୟନ୍ତୀକୁ ବିଶ୍ୱରୂପର ଶୋଇବା ଘରେ ଏକୁଟିଆ ବସିବାକୁ ବଡ଼ ସଂକୋଚ ଲାଗୁଥିଲା । ବାହାରକୁ ଆସି ସେ ଗୋଟେ ସ୍ୱସ୍ତିର ନିଶ୍ୱାସ ମାରି ବଗିଚାରେ ବୁଲିଲା । ବଡ଼ ବଡ଼ କୁଣ୍ଡରେ ଗୋଲାପ, ରଜନୀଗନ୍ଧା, ସେବତୀ, ଜିନିଆ ବେଶ୍ ବଡ଼ ବଡ଼ ହେଇ ଫୁଟିଛି । କୁଣ୍ଡଗୁଡ଼ିକ ସବୁ ସିମେଣ୍ଟରେ ପୁଣି ଏକା ସାଇଜର । ଭଦ୍ରଲୋକଙ୍କର ବେଶ୍ ରୁଚି ଅଛି ମାନିବାକୁ ପଡ଼ିବ । ଗୋଲାପ କୁଣ୍ଡ ପାଖରେ ତା ପାଦ ଅଟକିଗଲା । ନାଳି, ଗୋଲାପୀ, ହଳଦିଆ କେତେ ପ୍ରକାର ରଙ୍ଗ । ବାହାରୁ କେଉଁଠୁ ଅଣାଉଛନ୍ତି ବୋଧେ । ଗୋଟେ ଫୁଲ ପାଖକୁ ହାତ ବଢ଼ାଇ ଜୟନ୍ତୀ ଅଟକି ଗଲା । ପଛରେ ବିଶ୍ୱରୂପ ଠିଆ ହୋଇଛନ୍ତି । ତାଙ୍କ ହାତରେ ଗୋଛାଏ ରଜନୀଗନ୍ଧା । ଜୟନ୍ତୀ ଟିକେ ଲାଜେଇ ଯାଇ ତାଙ୍କୁ ଚାହିଁ କହିଲା - ଆପଣ ଆସିଲେ କାହିଁକି ? ବାହାରେ ବେଶ୍ ଥଣ୍ଡା ପଡ଼ିଲାଣି । ଆପଣଙ୍କୁ ଦେଖିଲେ ଭାଇ ମୋ ଉପରେ ବିରକ୍ତ ହେବ । କହିବ, ଭଲ ରୋଗୀ ଦେଖି ଆସିଛୁ ତୁ ? ବିଶ୍ୱରୂପ ହସିଲେ - କହିଲେ ତମେ ସବୁ ଆସିବା ପରେ ମୋ ଦେହ ଓ ଜ୍ୱର ଅଧା ଭଲ ହୋଇଯାଇଛି । ଏକୁଟିଆ ଦିନଟା ଯାକ ବିଛଣାରେ ପଡ଼ି ପଡ଼ି ମୁଁ ପୁରା ରୋଗୀ ହୋଇଯାଇଥିଲି । ସେଇ ଖୁସିରେ ତମକୁ ମୋର ଏ ରଜନୀଗନ୍ଧା ଉପହାର । ଥରିଲା ହାତରେ ଜୟନ୍ତୀ ରଜନୀଗନ୍ଧା ଗୋଛାଟି ଧରିଲା । ଆଉ କିଛି କହିବା ଆଗରୁ ବିଶ୍ୱରୂପ ଗୋଟେ ବଡ଼ ନାଳି ଗୋଲାପ ଛିଣ୍ଡାଇ ତା ବେଣୀରେ ଖୋସିଦେଲେ । ଜୟନ୍ତୀ ଲାଜରେ ତଳକୁ ମୁହଁ କରି ଠିଆ ହେବା ଭିତରେ



ଜୟନ୍ତ ଗେଟ୍ ଖୋଲି ପଶିଆସିଲା । ବିଶ୍ୱରୂପକୁ ଦେଖି କହିଲା - "ଆପଣଙ୍କୁ ଜର ପରା । ଆମେ ଦେଖିବାକୁ ଆସିଛୁ ଅଥଚ ଆପଣ ଏଠି ବଗିଚାରେ ବୁଲୁଛନ୍ତି ? ଅପା ନିଶ୍ଚୟ ଆପଣଙ୍କୁ ଧରି ଆସିଛି ବଗିଚା ବୁଲି ଦେଖିବା ପାଇଁ । ଅପାର ଫୁଲ ଗଛକୁ ବଡ଼ ଲୋଭ ତ । ମୁଁ ତାକୁ ଆପଣଙ୍କ ଗଛ କଥା କହିଥିଲି ତ ? ନୁହଁ ଅପା ?

ଜୟନ୍ତୀ କିଛି ନ କହି ବାରଣ୍ଡା ଉପରକୁ ଉଠିଗଲା । ତା ହାତରେ ରଜନୀଗନ୍ଧା ଗଛ ଓ ବେଣୀରେ ଗୋଲାପ ଫୁଲ । ଜୟନ୍ତ ନିଶ୍ଚୟ ଦେଖିଥିବ । ସେ ଛୋଟପିଲା ନୁହଁ । ଷୋଳ ସତର ବର୍ଷ । ଏ ବର୍ଷ ମେଟ୍ରିକ୍ ପରୀକ୍ଷା ଦବ । ଯଦି କିଛି ଦେଖିଥିବ ସେ ମୁକୁନ୍ଦ ଭାଇ କିମ୍ବା ବାପାଙ୍କୁ କହିବ ନାହିଁ । କିନ୍ତୁ ଭାବିଥିବ ଅପା ଓ ବିଶ୍ୱରୂପ ଭାଇ ହୁଏତ ଏ ଭିତରେ ପ୍ରେମରେ ପଡ଼ିଯାଇଛନ୍ତି । ସତରେ କ'ଣ ବିଶ୍ୱରୂପର ତା ପ୍ରତି ସେଭଳି କିଛି ଦୁର୍ବଳତା ଅଛି ? ଜୟନ୍ତୀ ତ ତାର ଫୁଲ ଉପହାରରେ କିଛି ପ୍ରତିବାଦ କରିନାହିଁ । ତା ମନ କ'ଣ ଧୀରେ ଧୀରେ ବିଶ୍ୱରୂପ ପ୍ରତି ଦୁର୍ବଳ ହୋଇଯାଉଛି ? ସେଦିନ ଜିପ୍‌ରେ ଆସିଲାବେଳେ ତାଙ୍କର ଗପସପ, ହସ, ଥଟ୍ଟା ସବୁ ଜୟନ୍ତୀକୁ ଏକ ପ୍ରକାର ଆନନ୍ଦ ଦେଉଥିଲା । ଘରକୁ ଫେରି ଅନେକ ରାତିଯାଏ ସେ ତାଙ୍କ କଥା ଭାବୁଥିଲା । କାହିଁକି ? ମଝିରେ ତା ବାପା ଆସି ତା ପରୀକ୍ଷା କଥା ପଚାରି ଯାଇଥିଲେ । ସେ କିନ୍ତୁ ତାର କି ଉତ୍ତର ଦେଲା କେଜାଣି ସେ କହିଲେ - ହଉ ତୁ ବସି ପଢ଼ ମୁଁ ପରେ କଥା ହେବି ତା ପରେ ଅବଶ୍ୟ ଘନଶ୍ୟାମ ବାବୁ ଝିଅକୁ ଆଉ କିଛି ପଚାରି ନାହାଁନ୍ତି । ଏ ଭିତରେ ଜୟନ୍ତୀର ପରୀକ୍ଷା ସରିବା ମାସେ ଉପରେ ହେଇଗଲାଣି ।

ବିଶ୍ୱରୂପ ଓ ଜୟନ୍ତ ବାରଣ୍ଡାକୁ ଆସିବା ଭିତରେ ମୁକୁନ୍ଦ ଜଳଖିଆ ଧରି ଫେରି ଆସିଲା । ଜୟନ୍ତକୁ ଦେଖି କହିଲା - ତୁ କେତେବେଳେ ଆସିଲୁ । ଦୋକାନରେ ଚାରିଟାବେଳେ ଯାହା ଭିଡ଼ ! ଚାଲନ୍ତୁ ସାର୍ ଭିତରକୁ । ବାହାରେ ବେଶ୍ ଥଣ୍ଡା ପଡ଼ିଲାଣି । ବୁଲନ୍ତୁ ନାହିଁ । ସମସ୍ତେ ଯାଇ ଡ୍ରଇଂ ରୁମ୍‌ରେ ବସିଲେ । ମାଧବ ମଧ୍ୟ ଆସିଯାଇଥିଲା । ସେ କିଛି ପ୍ଲେଟ୍ ଆଣି ଜଳଖିଆ ସଜାଡ଼ି ଦେଲା । ଗ୍ଲାସ୍‌ରେ ପାଣି ଆଣି ଟେବୁଲ୍‌ରେ ରଖିଗଲା । କେହି କିଛି କହିବା ପୂର୍ବରୁ ଜୟନ୍ତ ଖାଇବା ଆରମ୍ଭ କରିଦେଲା । ଖାଇବା ପ୍ରିୟ ସେ ସବୁଦିନେ । ବାହାର ଜଳଖିଆ ହେଉଥିଲେ ଆଉ କଥାବାର୍ତ୍ତା ନାହିଁ । ସମସ୍ତେ ଗପସପ କରି ଖାଉଥାନ୍ତି । ସେ ସବୁ କିଣା ଜଳଖିଆ ନ ଖାଇବାକୁ ବିଶ୍ୱରୂପକୁ ମନା କରିବାକୁ ଜୟନ୍ତୀ ଭାବୁଥିଲା । କିନ୍ତୁ ମୁକୁନ୍ଦ ସାମନାରେ କିଛି କହିବାକୁ ତାକୁ ଲାଜ ମାଡ଼ିଲା ।

ଶୀତଦିନ ସନ୍ଧ୍ୟା । ବେଶ୍ ଅନ୍ଧାର ହୋଇ ଆସିଲା । କିଛି ସମୟ ପରେ ମୁକୁନ୍ଦ ଉଠି ଠିଆ ହେଲା । "ସାର୍ ଆମେ ଏଥର ଉଠୁଛୁ ।" ଆପଣ ରେଷ୍ଟ ନିଅନ୍ତୁ । ମୁଁ କାଲି ପୁଣି ଆସିବି । ଭାବୁଛି ଏଥର ଜର ଆଉ ବଢ଼ିବ ନାହିଁ । କିଛି ଦରକାର ହେଲେ ଖବର ଦେବେ । ମୁଁ ବର୍ତ୍ତମାନ



ଦାଦାଙ୍କ ଘରେ ରହୁଛି । ଅଫିସ୍ ପରେ ଥଣ୍ଡାରେ ଗାଁକୁ ଫେରିବାକୁ ଦାଦା ମନା କରୁଛନ୍ତି । ସାର୍ କାଲି ଆପଣ ଅଫିସ୍ ଆସନ୍ତୁ ନାହିଁ । ଦିନେ ଦୁଇଦିନ ରେଷ୍ଟ ନେଲେ ଭଲ । ବିଶ୍ୱରୂପ ଜୟନ୍ତୀକୁ ଚାହିଁ କହିଲେ ସୁବିଧା ହେଲେ ମୁକୁନ୍ଦ ବାବୁଙ୍କ ସହିତ ତମେ ଦୁହେଁ ଆସିବ । ଗପସପରେ ସମୟ କଟିଗଲା । ଏକୁଟିଆ ବଡ଼ ବୋର୍ ଲାଗୁଛି ।

ସେଇ ରଜନୀଗନ୍ଧା ସେଇ ଭଳି ଗୁଚ୍ଛା କରି ଜୟନ୍ତୀ ତା ପଢ଼ା ଟେବୁଲ୍‌ରେ ସଜାଡ଼ି ରଖିଥିଲା । ମୁକୁନ୍ଦ ତା ହାତରେ ଫୁଲତୋଡ଼ା ଦେଖି ପଚାରିଥିଲା ବିଶ୍ୱରୂପ ବାବୁଙ୍କ ବଗିଚାରୁ ଏତେଗୁଡ଼ା ଫୁଲ ନେଇ ଆସିଲୁ ? ଭଦ୍ରଲୋକ ରାଗିନାହାଁନତି ତ ? ତାଙ୍କର ଫୁଲଗଛ ବଡ଼ ସଉକ । ଜୟନ୍ତୀ କିଛି ଉତ୍ତର ଦେଇନଥିଲା । ଅନେକ ଦିନ ଯାଏ ସେ ଫୁଲର ବାସ୍ନା ଜୟନ୍ତୀ ମନକୁ ବିଭୋର କରି ରଖିଥିଲା । ଜୟନ୍ତ ବେଳେବେଳେ କହେ ଅପା - ସେ ରଜନୀଗନ୍ଧା ଗୁଚ୍ଛ ଶୁଖିଗଲାଣି - ଆଉ ତାକୁ ସାଇତି ରଖିଛୁ କାହିଁକି ? ବିଶ୍ୱରୂପ ଭାଇଙ୍କ ବଗିଚାରୁ ଆଉ ଗୋଟାଏ ଫୁଲ ଆଣି ଦେବି କି । ତା କଥାରେ ଜୟନ୍ତୀ ହସିଦିଏ । ଜୟନ୍ତ ପିଲା ଲୋକ । ଏ ଫୁଲତୋଡ଼ାର ମହତ୍ୱ କ'ଣ ବୁଝିବ । ତା ମନରେ ସେଇ ଗୋଟିଏ ସନ୍ଧ୍ୟା ପରେ କେତେ ଯେ ରଜନୀଗନ୍ଧା ଫୁଟିଉଠିଛି ସେ ନିଜେ ବି କଳଣା କରିପାରେନା । ମାତ୍ର ସେଇ ଗୋଟିଏ ସନ୍ଧ୍ୟାରେ ସ୍ପର୍ଶ ଆଉ ସ୍ମୃତି ତା ସାରା ଦେହ ମନକୁ ଦୋହଲାଇ ଦେଇଛି । ସେ ସବୁ ପର ଅତି ନିଜସ୍ୱ ଆପଣାର । ବିଶ୍ୱରୂପ ନିଜେ ହୁଏତ ବୁଝି ପାରିନଥିବ । ସବୁ ଯେମିତି ଜୟନ୍ତୀକୁ କିଛିକ୍ଷଣ ପାଇଁ ଦୁର୍ବଳ କରି ଦେଇଥିଲା । ତା ମନ ଓ ଦେହ ଚହଲି ଯାଇଥିଲା । ଏବେ କିନ୍ତୁ ସବୁ ଭୁଲିଯିବାକୁ ଚାହେଁ ଜୟନ୍ତୀ ।

ବିଶ୍ୱରୂପ ବଡ଼ ଘରର ପିଲା । ସେ ସାମନ୍ୟ ଜଣେ ମାଷ୍ଟରଙ୍କ ଝିଅ । ରୂପ ଛଡ଼ା ତାର ଯାହା ଆଉନା କାହିଁକି ତାଙ୍କ ପରିବେଶ ପରି ବାର ସମ୍ପୂର୍ଣ୍ଣ ଅଲଗା । ତେଣୁ ଏ ସବୁ ଦୁର୍ବଳତା ମନରୁ ପୁରାପୁରି ପୋଛି ଦେବାକୁ ପଡ଼ିବ । ଏ ଭିତରେ ସେ ବିଇ.ଡ଼ି. ପାଇଁ ଆପ୍ଲାଏ କରିଛି । ଯେ କୌଣସି ମୁହୂର୍ତ୍ତରେ ଇଣ୍ଟରଭ୍ୟୁ ପାଇଁ ତାକୁ ଡ଼ାକରା ଆସିପାରେ । କଟକରେ ଭାଇ-- ଭଉଣୀ ଦୁହେଁ ରହି ଲେ ବଡ଼ ସୁବିଧା ହୁଅନ୍ତା । ଘନଶ୍ୟାମ ବାବୁଙ୍କ ଇଚ୍ଛା କଟକରେ ସେ ଖଣ୍ଡେ ଘର ଭଡ଼ା ନେଇ ପିଲାଙ୍କ ପାଖରେ ମଝିରେ ମଝିରେ ଯାଇ ରହନ୍ତେ । ପେନ୍‌ସନ୍ ଛଡ଼ା ଟିଉସନ୍ ଓ ବହିପତ୍ରରୁ ସେ ଯାହା ଆୟ କରିଛନ୍ତି ସବୁ ସେ ସେଇ ପିଲାଙ୍କ ପାଇଁ ରଖିଛନ୍ତି । ଜୟନ୍ତୀ ପିଲାଦିନୁ ତା ବାପାଙ୍କୁ ଦେଖି ତାର ମାଷ୍ଟ୍ରଟିଏ ହବାକୁ ମନ । ଜୟନ୍ତର ଆଗରୁ ମେଡ଼ିକାଲ୍‌ରେ ପଢ଼ିବାକୁ ମନ ସ୍ଥିର କରିଛି । ସେ ଭଲ ଷ୍ଟୁଡ଼େଣ୍ଟ । ସିଟ୍ ପାଇଯିବ । ଜୟନ୍ତୀର ଚାକିରୀ ପରେ ସେ ମଧ କିଛି ବାପାଙ୍କୁ ସାହାଯ୍ୟ କରିପାରିବ । ଏଇସବୁ କଥା ଭାବି ଜୟନ୍ତୀ ତା ମନକୁ କିଛିଟା ଶାନ୍ତ କରିନେଲା ।



ଚାରି ପାଞ୍ଚଦିନ ହେଲାଣି ମୁକୁନ୍ଦ ବାବୁ ଗାଁକୁ ଯାଇଛନ୍ତି । ଗାଁରେ ଚକବନ୍ଦୀ ବନ୍ଦୋବସ୍ତ କାମ ଚାଲିଛି । ଘନଶ୍ୟାମ ବାବୁ ତାଙ୍କୁ ସ୍କୁଲର ଟିଚର୍ସ ମିଟିଙ୍ଗ ପାଇଁ ଯାଇଛନ୍ତି । ହଠାତ୍ ଜୟନ୍ତ ସ୍କୁଲରୁ ଫେରି କହିଲା - ଅପା ମୁଁ ପୁରା ଭୁଲି ଯାଇଥିଲି ତତେ ଗୋଟେ କଥା କହିବାକୁ । ଜାଣିଛ ଆଜି ମୁଁ କ୍ରିକେଟ୍ ବଲ କିଣି ଫେରିବା ବାଟରେ ବିଶ୍ୱରୂପ ଭାଇଙ୍କ ସହିତ ଦେଖାହେଲା । ଆଜି ସନ୍ଧ୍ୟାରେ ତତେ ନେଇ ତାଙ୍କ ବସାକୁ ଯିବାକୁ କହିଥିଲେ । ମୁଁ ଠିକ୍ ବୁଝିପାରୁନି କିନ୍ତୁ ଭାବୁଛି ଆଜି ବୋଧେ ତାଙ୍କ ଜନ୍ମଦିନ । ଗୋଟେ ନୂଆ ସାର୍ଟ ଧରିଥିଲେ । ମୁଁ ପଚାରିଲି କାହିଁକି ? ସେ ହସିଲେ - କହିଲେ ଆସିଲେ ଜାଣିବ । ଅପାକୁ ନେଇ ନିଶ୍ଚୟ ଆସିବ । ମୁଁ ଅପେକ୍ଷା କରିଥିବି । ତାଙ୍କ ଦେହ ଖରାପ ପରେ ଆଉ ତାଙ୍କୁ ତ ଆମେ ଦେଖିନଥିଲେ । ଟିକେ ଶୁଖିଲା ଦିଶୁଛନ୍ତି । ଏତେ କରି କହିଛନ୍ତି ଚାଲ୍ ଯିବା ବୁଲି ଆସିବା ।

ଜୟନ୍ତୀର ଯିବାକୁ ଇଛା ସତ କିନ୍ତୁ ଘରେ ବାପା ନାହାଁନ୍ତି । ମୁକୁନ୍ଦ ଭାଇ ନାହିଁ । ତାଙ୍କୁ ସବୁ ନ ପଚାରି ଯିବା ଉଚିତ ହବକି ? ତା ଛଡ଼ା ଯଦି ଜନ୍ମଦିନ ହେଇଥିବ ଖାଲି ହାତରେ ଯିବା ଉଚିତ୍ କି ? ଜୟନ୍ତୀ ଦ୍ୱନ୍ଦରେ ପଡ଼ିଗଲା । କିନ୍ତୁ ତା ମନ କହୁଥାଏ ଥରେ ଯାଇ ବିଶ୍ୱରୂପକୁ ଦେଖି ଆସନ୍ତା । ତା ଦେହ ଖରା ପରଠୁ ପ୍ରାୟ ଦଶବାର ଦିନ ହବ ସେ ତାଙ୍କୁ ଦେଖିନାହିଁ । ଜୟନ୍ତୀ ଚୁପ୍‌ଚାପ୍ ରହିବା ଦେଖି ଜୟନ୍ତ କହିଲା - ତୁ ବାହାରି ପଡ଼ ଅପା - ମୁଁ ଅପାକୁ ଆମ ଯିବା କଥା କହି ବଜାରରୁ କିଛି ଗୋଟେ ବଢ଼ିଆ ପ୍ରେଜେଣ୍ଟେସେନ କିଣି ଆଣୁଛି । ବାପା ଫେରିଲେ ଅପା ତାଙ୍କୁ ଜଣାଇଦେବ । ଜୟନ୍ତୀ ତା ବେଗ୍ ଖୋଲି ଖଣ୍ଡେ ପାଞ୍ଚଶହ ଟଙ୍କିଆ ନୋଟ୍ ଜୟନ୍ତକୁ ଦେଇ କହିଲା - ଭଲ ବହି ଦେଖି ଦୁଇ ତିନିଖଣ୍ଡ ଆଣିବୁ । ସେ ବହି ପଢ଼ିବାକୁ ଭଲପାନ୍ତି ।

ଭାଇ ଭଉଣୀ ଦୁହେଁ ଚାରିଟା ବେଳେ, ବ୍ରିଟ୍ କଲୋନୀ ଆଡ଼େ ବାହାରିଗଲେ । ଗଲାବେଳେ ପୁଣିଥରେ ଅପାକୁ କହିଗଲେ ଘନଶ୍ୟାମ ବାବୁଙ୍କୁ ଜଣାଇ ଦେବାକୁ । ବାଟଯାକ ଜୟନ୍ତ ବକ୍ ବକ୍ ହେଇ ଚାଲିଥାଏ । ବିଶ୍ୱରୂପ ବାବୁଙ୍କ ପ୍ରଶଂସାରେ ସେ ପଞ୍ଚମୁଖ । ଭଦ୍ରଲୋକ ସତେ ଯେପରି ତାଙ୍କୁ ଯାଦୁ କରି ଦେଇଛନ୍ତି । ଜୟନ୍ତୀ ତା କଥାରେ କେବଳ ହୁଁ ହାଁ ମାରି ଚାଲିଥାଏ । ଆଜି ସାଙ୍ଗରେ ମୁକୁନ୍ଦ ଭାଇ ନାହାଁନ୍ତି । ତାଙ୍କ ସହିତ ସେ କି କଥାବାର୍ତ୍ତା କରିବ ? ସେ କ'ଣ କହିବେ ଜୟନ୍ତୀ ତାର କି ଉତର ଦବ ସେଇ କଥା ଭାବୁ ଭାବୁ ଅଳ୍ପ କିଛି ବାଟ ତାକୁ ବହୁତ ଲମ୍ବା ଲାଗୁଥାଏ । ଏ ବାଟ ଏ ପ୍ରତୀକ୍ଷା ଯେମିତି ସରିବାକୁ ନାହିଁ । ମନ ଭିତରେ ଭୟ, ଉତ୍କଣ୍ଠା । ବିଶ୍ୱରୂପ ହୁଏତ ଗେଟ୍ ପାଖରେ ଠିଆ ହେଇଥିବେ । ତାକୁ ଦେଖି ତାଙ୍କର ସେଇ ପରିଚିତ ହସ ହସି ତା ହାତ ଧରି ଗେଟ୍ ପାଖରୁ ଆଗେଇ ନେବେ ତାଙ୍କ ଘର ଭିତରକୁ । ଜୟନ୍ତ କହିବ ଦେଖିଲ ମୁଁ ମୋ କାମରେ କେତେ ପକ୍କା । ତମକୁ କଥା ଦେଇଥିଲି ନା ଅପାକୁ ନେଇ ଆସିବି ବୋଲି । ଦେଖ ଆମେ - ଗେଟ୍ ଖୋଲା ଶବ୍ଦରେ ଜୟନ୍ତୀର ଧ୍ୟାନ ଭାଙ୍ଗିଗଲା । ଦୁହେଁ ବାରଣ୍ଡା ଉପରକୁ ଯାଇ କଲିଂ ବେଲ୍ ମାରିବା ପୂର୍ବରୁ କବାଟ ଖୋଲିଗଲା । ସେମାନଙ୍କୁ ଦେଖି



କାନ୍ଦ କାନ୍ଦ ହୋଇ ମାଧବ କହିଲା - ବାବୁ ଆଜି ଗୋଟାଏ ବେଳେ ଖବର ପାଇ ଗାଡ଼ି ଧରି କଟକ ଚାଲିଗଲେ । ଆପଣଙ୍କ ପାଇଁ ଖଣ୍ଡେ ଚିଠି ଲେଖି ରଖିଯାଇଛନ୍ତି କହି ଖଣ୍ଡେ କାଗଜ ବଢ଼ାଇ ଦେଲା - ଥରିଲା ହାତରେ ଜୟନ୍ତୀ କାଗଜ ଖଣ୍ଡିକ ଖୋଲିଲା - ଲେଖାଅଛି -

**ଜୟନ୍ତୀ -**

ତମମାନଙ୍କୁ ନିମନ୍ତ୍ରଣ କରି ଆଣି ମୋର ଅନୁପସ୍ଥିତି ପାଇଁ ମୁଁ ବଡ଼ ଦୁଃଖିତ । ଦିନ ଦୁଇଟାରେ ଖବର ପାଇଲି ବାପା ହାର୍ଟଆଟାକ୍‌ରେ ହସ୍ପିଟାଲରେ । ମୁଁ ତରତରରେ ପଳେଇ ଆସିଲି । ମାଧବକୁ ତମମାନଙ୍କୁ ଜଣାଇ ଆସିବାକୁ କହିଥିଲି । ସେ ଗଲା କି ନାହିଁ ମୁଁ ଜାଣେ ନାହିଁ । ଘରକୁ ଆସି ଖବର ପାଇଥିବ । କେବେ ଫେରିବି ଜଣାନାହିଁ । ରହିଲି ।

(ଇତି)
ବିଶ୍ୱରୂପ

ଅଜାଣତରେ ଜୟନ୍ତୀ ଆଖିରୁ ଲୁହ ଝରି ଆସିଲା । ସେ କଣେଇ ଲୁହ ପୋଛି ଜୟନ୍ତକୁ କହିଲା ଚାଲ ଘରକୁ । ମାଧବ ସେମାନଙ୍କୁ ଭିତରକୁ ଡ଼ାକୁଥିଲା । କିନ୍ତୁ ଜୟନ୍ତୀ ଆଉ ପଛକୁ ଫେରିନାହିଁ ।

ସେଇ ଯେ ସେ ଫେରି ଆସିଥିଲା ତାପରେ ତାର ଆଉ ବିଶ୍ୱରୂପ ସହିତ ଦେଖା ହୋଇନାହିଁ । ଏ ଭିତରେ ସେ ବିଇଡ଼ି ସାରି ଚାକିରୀରେ ଜଏନ୍ କରିଛି । ଜୟନ୍ତ ଓ ସେ କଟକରେ ଗୋଟେ ଘର ଭଡ଼ା ନେଇ ରହୁଛନ୍ତି । ଘନଶ୍ୟାମ ବାବୁ ମଝିରେ ମଝିରେ ତାଙ୍କ ପାଖରେ ଆସି ରହନ୍ତି । ଭଦ୍ରକ ଘର ଛାଡ଼ି ଗାଁରେ ପ୍ରାୟ ରହୁଛନ୍ତି । ଏଇବର୍ଷ ପଢ଼ାସାରି ଜୟନ୍ତ ମେଡ଼ିକାଲ୍ ପରୀକ୍ଷା ଦବ । ସେ ଭଲ ପିଲା । ସିଟ୍‌ଟେ ପାଇଯିବ ନିଶ୍ଚୟ । ଘନଶ୍ୟାମ ବାବୁ ଝିଅର ବାହାଘର ପାଇଁ ଏବେ ବେଳେବେଳେ ବ୍ୟସ୍ତ ହୋଇ ପଡ଼ୁଛନ୍ତି । ଏ ଭିତରେ ଦୁଇ ତିନି ବର୍ଷ ବିତିଗଲାଣି । ବାପାଙ୍କର ଉଦ୍‌ବେଗ ଦେଖିଲେ ଜୟନ୍ତୀକୁ ଭୟ ଲାଗେ । କହନ୍ତି - ମତେ ବୟସ ହେଲାଣି । ତୋ କାମଟା ସାରିଦେଲେ ମୁଁ ନିଶ୍ଚିନ୍ତ ହେବି ।

ବିଶ୍ୱରୂପ କଥା ବେଳେବେଳେ ମନେ ପଡ଼ିଯାଏ । ତାଙ୍କ ଦେହ ଖରାପ ଦିନର କିଛି ଅକୁହା କଥା ହୁଏତ ତାଙ୍କ ଜନ୍ମଦିନ ସେ କହିଥାନ୍ତେ । ଜୟନ୍ତୀର ଉତ୍ତରକୁ ଅପେକ୍ଷା କରିଥାନ୍ତେ । ସବୁ କେମିତି ଅବୁଝା ଅକୁହା ଅଦେଖା ରହିଗଲା ।

ଜୟନ୍ତୀ ଶୁଣିଛି ଥରେ ତା ବାପା ମୁକୁନ୍ଦ ଭାଇଙ୍କୁ ବିଶ୍ୱରୂପ କଥା ପଚାରିଥିଲେ । ସେ କହିଲେ - ମୁଁ କିଛି ବିଶେଷ ଜାଣେନି ଦାଦା । କେତେ ଅଫିସ୍‌ରେ ଯାଉଛନ୍ତି ପୁଣି ତାଙ୍କ ଜାଗାରେ ନୂଆ ଆସୁଛନ୍ତି । ଅଫିସରୁ ଶୁଣିଥିଲି ତାଙ୍କ ବାପା ମରିଗଲେ । କାହିଁକି କେଜାଣି ସେ



ଏଠାକୁ ଆଉ ଫେରିଲେ ନାହିଁ । ତାଙ୍କ ଜିନିଷ ପତ୍ର ନବାକୁ ମଧ ସେ ଆସିନଥିଲେ । ଗୋଟେ ଗାଡ଼ି କରି ପଠେଇ ଦିଆଯାଇଛି । ମୁଁ ଆଉ ବିଶେଷ କିଛି ଜାଣେ ନାହିଁ । ମାତ୍ର ସାତ ଆଠ ମାସ ତ ଏଠି ଥିଲେ । କିଏ କିଏ କହୁଛନ୍ତି ତାଙ୍କ ବଡ଼ ଅଫିସରଙ୍କ ସହିତ କ'ଣ ସବୁ ଗଣ୍ଡଗୋଳ ହୋଇଥାଇପାରେ । ଏସବୁ କାମ ତ ସେୟା । ଉପରିସ୍ଥ ଅଫିସରଙ୍କ ମନ ନେଇ ଚଳିବାକୁ ପଡ଼େ । ବିଶ୍ୱରୂପ ଜଜ୍‌ଙ୍କ ପୁଅ । ବଡ଼ଘର ପିଲା । ତାଙ୍କର ନିଜସ୍ୱ କିଛି ମତ ଆତ୍ମମର୍ଯ୍ୟାଦା ଥିବ । ଘନଶ୍ୟାମ ବାବୁ ନୀରବ ରହିଲେ । ତାଙ୍କ ମନ ତଳେ ଯେଉଁ କ୍ଷୀଣ ଆଶା ଟିକଳ ଥିଲା ସେ ଯେମିତି ମଉଳି ଯାଇଥିଲା ।

ହଠାତ୍ ରଘୁର ଡ଼ାକରେ ଜୟନ୍ତୀର ଚେତା ଫେରି ଆସିଲା । ରିକ୍ସା ଘର ଆଗରେ ଠିଆ ହୋଇଛି । ଜୟନ୍ତୀ ରିକ୍ସାରୁ ଓହ୍ଲାଇବା ଭିତରେ ରଘୁ ତା ଖାତା ପତ୍ର ଧରି ପଛେ ପଛେ ଆସିଲା । ଦୁଆରେ ତାଲା । ତା ମାନେ ଜୟନ୍ତ କଲେଜରୁ ଫେରିନାହିଁ । ତାଲା ଖୋଲି ରଘୁ ହାତରୁ କାଗଜ ପତ୍ର ଧରି ଜୟନ୍ତୀ ଘରକୁ ପଶିଲା । ଦାଣ୍ଡ କବାଟ ବନ୍ଦ କରି କାଗଜ ପତ୍ର ଟେବୁଲରେ ପକାଇ ଦେଇ ଖଟରେ ଗଡ଼ିପଡ଼ିଲା । ତା ଆଖିର ଝର ଝର ଲୁହକୁ ସେ ଅଟକାଇ ନଥିଲା । କିନ୍ତୁ କାହାପାଇଁ ତାର ଏ ଲୁହ ? ବିଶ୍ୱରୂପ ? ସେ ତାର କିଏ ? ସେ ତ ଦୁଇ ତିନିବର୍ଷ ତଳୁ ତାକୁ ପଛରେ ପକାଇ ଆସିଛି । ତା କଥା ସେ ଏକ ରକମ ଭୁଲି ଯାଇଥିଲେ । ନୂଆ ଜୀବନ ନୂଆ ସଂସାର କରିବାକୁ ସେ ନିଜକୁ ପ୍ରସ୍ତୁତ କରୁଥିଲା । ଆଜି ପୁଣି ତାର ଏଭଳି ଆତୁରତା କାହିଁକି ? ଜଣେ ଅତି ପରିଚିତ ଲୋକର ଏଭଳି ପରିଣତି ପାଇଁ ସେ ହୁଏତ ମୋଟେ ପ୍ରସ୍ତୁତ ନଥିଲା । ଦୁଇ ତିନ ବର୍ଷର ପୁରୁଣା କଥା ଆଜି ବି ତା ମନରେ ଏଭଳି ସଜୀବ ହୋଇ ରହିଛି ସେ ନିଜେ ବି ହୁଏତ ଜାଣି ପାରିନଥିଲା । ଜୀବନରେ ଏମିତି ଅନେକ ଘଟଣା ଅନେକ ସ୍ମୃତି ମନ ଗହନରେ ଲୁଚି ରହିଥାଏ ଯାହାକି ସମୟ ସୁଯୋଗ ଦେଖି ଉଙ୍କିମାରେ । ମନକୁ ଅସ୍ଥିରୀ ଆନ୍ଦୋଳିତ କରେ । ଯାହା ଆଜି ଜୟନ୍ତୀ ଅନୁଭବ କରନ୍ତି ।

ଅନେକ ସମୟ କାନ୍ଦିଲା ପରେ ଜୟନ୍ତୀ ମନ ହାଲ୍କା ଲାଗିଲା । ବିଛଣାରୁ ଉଠିପଡ଼ି ସେ ଗାଧୁଆ ଘରୁ ମୁହଁ ଧୋଇ ଆସିଲାବେଳକୁ ବାହାରେ କଲିଂ ବେଲ୍ ବାଜିଲା । କବାଟ ଖୋଲି ଦେଖିଲା ଜୟନ୍ତ ହସି ହସି କହୁଛି ଶୋଇ ପଡ଼ିଥିଲୁକି ଅପା ? ଅନେକ ବେଳୁ ବେଲ୍ ମାରୁଛି । ଜୟନ୍ତୀ କହିଲା - ନାଁ ବାଥରୁମ୍‌ରେ ଥିଲି । ଯା ଧୁଆ ଧୋଇ ହେଇ ଚାଲିଆ ଜଳଖିଆ ଖାଇବା । ମତେ ଭୋକ ହେଲାଣି କହି ରୋଷେଇ ଘରେ ପଶିଗଲା ।



# ଅସତ୍ୟ ସହର

ଜେଲ୍ ଫାଟକ ଖୋଲି ସୁରେନ୍ଦ୍ର ପଦାକୁ ଆସିଲା । ହେମାଳିଆ ପବନ ସହିତ ଝିପି ଝିପି ବର୍ଷା, ଅନ୍ଧାରିଆ ଜେଲ୍ କୋଠରି ଭିତରୁ ବାହାରି ସୁରେନ୍ଦ୍ର ଏ ବର୍ଷା ପବନ ଯେମିତି ଗୋଟେ ନୂଆ ଜୀବନ ଦେଲା । ଜେଲ ଫାଟକ ବାହାରେ ଗୁଡ଼ାଏ ଅଟୋ, ଦୁଇ ଚାରିଖଣ୍ଡ ରିକ୍ସା । କିନ୍ତୁ ସିଆଡ଼କୁ ନ ଚାହିଁ ସେ ଚାଲିବାକୁ ଲାଗିଲା । ପକେଟରେ ତା ରୁମାଲ, କିଛି ଟଙ୍କା ଓ ତା ମଟର ସାଇକେଲ୍ ଲାଇସେନ୍ସ । ସେ ବାହାରିଲାବେଳେ ଜେଲବାବୁ ତାକୁ ସବୁ ଫେରେଇ ଦେଇଥିଲେ । ତାକୁ ସବୁ ପକେଟରେ ପୁରାଇଲା ବେଳେ ଯଦିଓ ତା ମନ ଘୃଣାରେ ପୁରି ଉଠୁଥିଲା ।

ଝାଡ଼ପଡ଼ା ଜେଲରୁ ବାହାରି ସେ ଯିବ ସାତନମ୍ବର ତା ନିଜ ଘରକୁ । ଘରେ ତା ସ୍ତ୍ରୀ ମେଘା ହୁଏତ ତାକୁ ଅପେକ୍ଷା କରିଥିବ ! କ'ଣ କରୁଥିବା କେମିତି କଟେଇଥିବ ଏତେ ଗୁଡ଼େଦିନ କିଏ ଜାଣେ ? ଛ ମାସ କିଛି କମ୍ ନୁହେଁ ? ସୁରେନ୍ଦ୍ର ରାସ୍ତା ମଝିରୁ ଫୁଟ୍‌ପାଥ ଉପରକୁ ଉଠିଗଲା । ହଠାତ୍ ପଛରୁ ଗୋଟେ ସ୍କୁଟର ଆସି ତା ପାଖରେ ଅଟକି ଗଲା । ପଛକୁ ଚାହିଁ ସୁରେନ୍ଦ୍ର ଦେଖିଲା ବରୁଣ ଠିଆ ହୋଇଛି । କହିଲା ପଛରେ ବସ୍ ମୁଁ ତତେ ନେଇ ତମ ଘରେ ଛାଡ଼ି ଦେବି । ମୁଁ ଜାଣିଥିଲି ତୁ, ଆଜି ଛାଡ଼ ପାଉଛୁ । କିନ୍ତୁ ମୋର ଦଶ ପନ୍ଦର ମିନିଟ୍ ଡ଼େରି ହେଇଗଲା । ମେଘାକୁ କହି ଆସିଛି ମୁଁ ତତେ ଆଣିବାକୁ ଯାଉଛି । ସେ ଅପେକ୍ଷା କରିଛି ।

ସୁରେନ୍ଦ୍ର ଓ ବରୁଣ ପିଲାଦିନୁ ଘନିଷ୍ଠ ବନ୍ଧୁ । ପାଖାପାଖି ଗାଁର ପିଲା ଏକାଠି ଦୁହେଁ ଏମ୍.ଏ. ପାଶ୍ କରି ଚାକିରୀ ପାଇଁ ଧାଁ ଦଉଡ଼ କରୁଥିଲେ । ସୁରେନ୍ଦ୍ର ଗୋଟେ ପ୍ରାଇଭେଟ୍ କଲେଜରେ ଲେକଚରଶିପ୍ ପାଇଲା । ଆଉ ବରୁଣ ଗୋଟେ ପ୍ରାଇଭେଟ୍ କମ୍ପାନୀରେ ସେଲସ୍ ମେନେଜର, ଦୁଇବନ୍ଧୁଙ୍କର ପ୍ରାୟ ଦେଖାହୁଏ । ସୁରେନ୍ଦ୍ର ଥାଏ ଗୋଟେ ଛୋଟ ଘରେ । ତା ବାପା ଷ୍ଟେନୋଗ୍ରାଫର ଚାକିରୀ କଲାବେଳେ ସେ ଘର ଖଣ୍ଡେ କିଣିଥିଲେ । ରିଟାୟାର୍ଡମେଣ୍ଟ ପରେ ସେ ଗାଁକୁ ଫେରିଗଲେ । ସୁରେନ୍ଦ୍ର ସେଇ ଘରେ ରହେ ତା ସ୍ତ୍ରୀ ମେଘାକୁ ନେଇ ବର୍ଷେ



ଦେଢ଼ ବର୍ଷ ହେଲା । ସୁରେନ୍ଦ୍ର ବରୁଣଙ୍କୁ ତା ଘରେ ତା ପାଖରେ ରହି ଯିବାକୁ ବହୁତ ଲଗାଉଥିଲା । କିନ୍ତୁ ବରୁଣର ସାନ ଭାଇଟିଏ ତା ପାଖରେ ରହି ବି.ଜେ.ବି. କଲେଜରେ ପଢୁଥାଏ । ଭାଇର ସୁବିଧା ପାଇଁ ସେ ପୁରୀ ବସ୍‌ଷ୍ଟାଣ୍ଡ ପାଖରେ ଗୋଟେ ଛୋଟ ଘର ନେଇ ରହେ । ଦୁଇବନ୍ଧୁଙ୍କର ପ୍ରାୟ ଦେଖାହୁଏ । ସୁଖ ଦୁଃଖ ଭିତରେ ଦୁହିଁଙ୍କର P.S.C. ପରୀକ୍ଷା ପାଇଁ ଅପେକ୍ଷା ।

କଲେଜ ଚାକିରୀ ଭିତରେ ସୁରେନ୍ଦ୍ର ଦୁଇଟା ଟିଉସନ୍ ମଧ୍ୟ କରେ । ପ୍ରାଇଭେଟ୍ କଲେଜରେ ଦରମା ଅଳ୍ପ । ପରିବାର ଧରି ଚଳିବାକୁ ହେଲେ ଅଧିକ କିଛି ରୋଜଗାର କରିବା ଦରକାର ପଡ଼େ । ସେଇ ଭିତରେ ଦିନେ ସେ ତା ପ୍ରଫେସରଙ୍କ ପାଖକୁ ଦେଖା କରିବାକୁ ଯାଇ ଜଣେ ଭଦ୍ରଲୋକଙ୍କ ସହିତ ତାର ପରିଚୟ ହେଲା । ସେ ଜଣେ ଦୈନିକ କାଗଜର ସମ୍ପାଦକ । ତାଙ୍କୁ ସାହାଯ୍ୟ କରିବା ପାଇଁ ଇଂରାଜୀରେ ଭଲ ଦଖଲ ଥିବା ଲୋକଟିଏ ସେ ଖୋଜୁଥିଲେ । ସୁରେନ୍ଦ୍ର ପ୍ରଫେସରଙ୍କ ସୁପାରିଶ ସେ ତାକୁ ତାଙ୍କ କାଗଜରେ ଦୁଇ ତିନି ଘଣ୍ଟା କାମ କରିବା ପାଇଁ ପ୍ରସ୍ତାବ ଦେଲେ । କହିଲେ, ମୋ କାଗଜ ମାତ୍ର ଏଇ ମାସେ ଦୁଇମାସ ହେବ ବାହାରୁଛି । ଆପଣଙ୍କୁ ପାରିଶ୍ରମିକ ଦେବି ନିଶ୍ଚୟ କିନ୍ତୁ ଆପଣଙ୍କ ଚାହିଦା ମୁତାବକ ହେଇ ନ ପାରେ । ଆପଣ ଆସନ୍ତୁ ଆପଣଙ୍କୁ ଭଲ ଲାଗିବ । ସୁରେନ୍ଦ୍ର ରାଜି ହେଇଗଲା । ସନ୍ଧ୍ୟା ସାତଟା ପରେ ସେ ପ୍ରାୟ ଫ୍ରି ହେଇଯାଏ । ଏଣେ ତେଣେ ନ ବୁଲି କିଛି ସମୟ ଖବରକାଗଜ ଅଫିସରେ କଟେଇଲେ କ୍ଷତି କ'ଣ ? ସୁରେନ୍ଦ୍ର ରାଜି ହେଇଗଲା । ଲେଖାଲେଖି କାମ ମଧ୍ୟ ସୁରେନ୍ଦ୍ରକୁ ଭଲ ଲାଗେ । ତେଣୁ ସେ ତାର ସମ୍ମତି ଜଣାଇ ଦେଲା । ବିଶେଷତଃ ଇଂରାଜୀରେ ତାର ଭଲ ଦଖଲ ।

କାଗଜର ସମ୍ପାଦକ ଅବନୀବାବୁ ବଡ଼ ଅମାୟିକ ଭଦ୍ରଲୋକ । ତାଙ୍କ ଅଫିସରେ ପହଞ୍ଚିଲାମାତ୍ରେ ସେ ଦୁଇକପ୍ ଚାହା ମଗାଇ ଦିଅନ୍ତି । ଏଣୁ ତେଣୁ ଗପ ଭିତରେ ପ୍ରୁଫ୍ ରିଡ଼ିଂ ଚାଲେ । ଅନ୍ୟକିଛି ନୂଆ ଘଟଣା ଜଣାଥିଲେ ପୁରାଇ ଦବାକୁ କହନ୍ତି । ତମ ଆଖ ପାଖରେ କେତେ ସବୁ ନୂଆ ଘଟଣା ଆଖିରେ ପଡୁଥିବ । ସେ ସବୁ ମନେ କରି ଭଲ ଭାବେ ଲେଖ । ଆଜି କାଲିକା କାଗଜରେ ଚାହିଦା ସେ ସବୁଥିଲେ ବଢ଼େ । ରାଜନୀତି ଅପେକ୍ଷା ଲୋକମାନେ ସେ ସବୁ ପଢ଼ିବାକୁ ବେଶୀ ଭଲପାନ୍ତି । ତମେତ କେତେ କାଗଜ ପଢୁଥିବ ବୁଝିପାରୁଥିବ ନିଶ୍ଚୟ ।

ରହୁଁ ରହୁଁ କାଗଜ ଅଫିସ୍‌ରେ ସୁରେନ୍ଦ୍ରର ମାସେ ଦେଢ଼ ମାସ କଟିଗଲା । ଖୁବ୍ ବେଶୀ ନହେଲେ ମଧ ଅବନୀବାବୁ ତାକୁ ବେଶ୍‌କିଛି ପାରିଶ୍ରମିକ ଦେଲେ । ତାଙ୍କ କଥାବାର୍ତ୍ତାରୁ ତାକୁ ଲାଗିଲା ଯେ ସେ ତା କାମରେ ବେଶ୍ ଖୁସି । ସୋମବାର ଦିନ କାଗଜ ଅଫିସ୍ କାମ ଅପେକ୍ଷାକୃତ କମ୍ । ମେଘା କହିଲା ଚାଲ ଟିକେ ମାର୍କେଟ ଯିବା । ମୋର କିଛି କିଣାକିଣି କରିବାର ଅଛି । ଘଣ୍ଟେ ଦେଢ଼ଘଣ୍ଟା ଭିତରେ ଫେରିଆସିବା । ଦୁହେଁ କିଛି ସମୟ ବୁଲାବୁଲି କାମସାରି ପୁରୀ ବସ୍‌ଷ୍ଟାଣ୍ଡ ପାଖ ଦେଇ ଫେରିବା ରାସ୍ତାରେ ମେଘା କହିଲା - ଏଇଠି ଗୋଟେ ମହାଦେବଙ୍କ



ମନ୍ଦିର ଅଛି । ଆଜିତ ସୋମବାର । ମୁଁ ଟିକେ ଦର୍ଶନ କରି ଦୀପଟିଏ ଦେଇଆସେ । ମନ୍ଦିର ପାଖକୁ ଯିବାକୁ ଗୋଟେ ଗଳି ରାସ୍ତା, ସୁରେନ୍ଦ୍ର ଗଳି ମୁଣ୍ଡରେ ମଟର ସାଇକେଲ ଧରି ଅପେକ୍ଷା କଲା । ମେଘାକୁ କହିଲା, ତମେ ଯାଅ ଦର୍ଶନ ସାରିଆସ । ମୁଁ ଏଠି ଠିଆ ହେଉଛି । ମେଘା ଗୋଟେ ବୁଢ଼ା ପାଖରେ ଚଟି ରଖି ଭିତରକୁ ଗଲା । ସୁରେନ୍ଦ୍ର ଭିଡ଼କୁ ଲକ୍ଷ୍ୟ କରିଥାଏ, ଅଧିକାଂଶ କଲେଜ ପିଲା । ଅଠରରୁ କୋଡ଼ିଏ ବର୍ଷ ଭିତରେ । ତାଙ୍କ ଲାଇନ୍ କିନ୍ତୁ ବେଶ୍ ଲମ୍ବା । ସୁରେନ୍ଦ୍ର ଯୋତା ବାଲାକୁ ପଚାରିଲା ଆଜି ଏତେ ଭିଡ଼ କାହିଁକି ? ପିଲାଙ୍କର କିଛି ପରୀକ୍ଷା ଅଛିକି ? ବୁଢ଼ାଟି ହସିଲା - କହିଲା ବାବୁ ଆପଣତ ଦିଅଁ ଦର୍ଶନ କରିବେ - କଦଳୀ କିଏ ଖାଇଲା ସେଥିରୁ ଆପଣ କ'ଣ ପାଇବେ ? ବୁଢ଼ାଟିର କଥା ସୁରେନ୍ଦ୍ର କିଛି ବୁଝିପାରିଲା ନାହିଁ । ଏତେ ସମୟ ଠିଆ ହେଇ ମେଘାକୁ ଅପେକ୍ଷା କରିବାକୁ ଅଧୈର୍ଯ୍ୟ ଲାଗୁଥିଲା । ମେଘାକୁ ଫେରିବା ଦେଖି ବିରକ୍ତ ହେଇ କହିଲା - ଏତେ ସମୟ ଯାଏ କ'ଣ କରୁଥିଲ । ମେଘା ବିରକ୍ତ ହେଇ କହିଲା ଦେଖୁନ କେମିତି ଲାଇନ୍ । ଏ ଟୋକାଗୁଡ଼ା କ'ଣ ବାଟ ଛାଡ଼ୁଛନ୍ତି ? ଆଉ ସଞ୍ଜ ବେଳେ କେବେ ଆସିବି ନାହିଁ ବାବା ! ଚାଲ ଚାଲ ଡେରି ହେଲାଣି । ସେମାନେ ଘରକୁ ଫେରି ଆସିଥିଲେ ।

ରବିବାର ସମ୍ବାଦ ଅଫିସ୍ କାମ ଶୀଘ୍ର ସରିଯାଏ । ଟିଉସନ୍ ବନ୍ଦ, ତାରି ଗୋଟେ ଛାତ୍ର ଅସୀତକୁ ଆଜି ସକାଳୁ ଯାଇ ପଢ଼ାଇ ଆସିଛି । ତାର ଟେନ୍ଥ କ୍ଲାସ ପରୀକ୍ଷା । ତା ବାପା ବରଗଡ଼ ଥାନା ସବ୍‌ଇନ୍‌ସ୍ପେକଟର । ତାଙ୍କ ସୁରେନ୍ଦ୍ରର ପ୍ରାୟ କମ୍ ଦେଖାହୁଏ । ପୋଲିସ୍‌ବାଲାଙ୍କ କାମ ଦିନ ସାରା । ପୁଣି ଥାନା ଚାର୍ଜରେ ଥିଲେତ ଛାଡ଼ । ଅସୀତର ମାଆ ସୁରେନ୍ଦ୍ରକୁ ବହୁତ ସ୍ନେହ କରନ୍ତି । ସେ ଗଲାମାତ୍ରେ ଚାହା କିମ୍ବା କଫି ପଠାଇ ଦିଅନ୍ତି । ସୁରେନ୍ଦ୍ରକୁ କହନ୍ତି ଆପଣଙ୍କ ପାଖେ ପଢ଼ିଲା ଦିନୁ ଅସୀତ ପରୀକ୍ଷାରେ ଆଗ ଅପେକ୍ଷା ଭଲ କରୁଛି । ତା ପରୀକ୍ଷା ସରିବାଯାଏ ସେ ଆପଣଙ୍କ ଦାୟିତ୍ୱରେ ରହିଲା । ସୁରେନ୍ଦ୍ର କହେ - ମାଡ୍ୟାମ୍, ଅସୀତ୍ ଭଲ ପିଲା । ପରିଶ୍ରମୀ, ତାକୁ ଖାଲିବାଟ ଦେଖାଇବା ମୋ କାମ । ଆପଣ ନିଶ୍ଚିନ୍ତ ରହନ୍ତୁ । ସେ ଭଲ କରିବ ।





ସେଦିନ ମେଘାକୁ ଘରେ ଛାଡ଼ି ସୁରେନ୍ଦ୍ର ବରୁଣ ଘର ଆଡ଼େ ଗଲା ।  ଦୁଇବନ୍ଧୁଙ୍କର ପ୍ରାୟ ଦେଖାହୁଏ । ଚାକିରୀ ବାକିରୀ ଭଲମନ୍ଦ କଥା ଦୁହେଁ ବସି ଗପସପ କରନ୍ତି । ସୁରେନ୍ଦ୍ର ତା ବାପାଙ୍କ ଖୁସି ପାଇଁ ବର୍ଷେ ଦେଢ଼ ବର୍ଷ ହେଲା ବାହା ହୋଇଛି । ସେ ବାପା ମାଆଙ୍କର ଗୋଟିଏ ମାତ୍ର ପୁଅ । ପିଲାଦିନୁ ତା ମାଆ ମରିଯାଇଥିଲେ । ତେଣୁ ସେ ତାଙ୍କ ମନରେ ଦୁଃଖ ଦବାକୁ ଚାହିଁ ନଥିଲା । ବାହାଘର ପରେ ମେଘା ଅନେକଦିନ ତା ବାପାଙ୍କ ପାଖରେ ରହୁଥିଲା । କିନ୍ତୁ ତା ଚାକିରୀ ପରେ ସେ ଭୁବନେଶ୍ୱର ଆସିଛି । ସୁରେନ୍ଦ୍ରର ଖିଆପିଆ ଅସୁବିଧା ପାଇଁ ସେ ତାକୁ ପଠାଇ ଦେଇଛନ୍ତି ।

ସମୟ ପାଇ ସୁରେନ୍ଦ୍ର ସେଦିନ ବରୁଣ ଘରକୁ ଗଲା । ସନ୍ଧ୍ୟା ସମୟ, ଦାଣ୍ଡ କବାଟ ଆଉଜା ଦେଖି ସୁରେନ୍ଦ୍ର ଭିତରକୁ ପଶିଗଲା । ଦେଖିଲା ବରୁଣ ତା ସାନଭାଇ କିରଣକୁ ବହୁତ ବକାବକି କରୁଛି । କିରଣ ତଳକୁ ମୁଣ୍ଡ ପୋତି ଛିଡ଼ା ହେଇଛି । ସୁରେନ୍ଦ୍ରକୁ ଦେଖି ବରୁଣ କହିଲା ଯା ଏଥର ଲୁଗାପଟା ବଦଳାଇ ପଢ଼ି ବସ୍ । ଆଉ ଦିନେ ସେ ଗୁଡ଼ାଙ୍କ ସାଙ୍ଗରେ ଯେ ଗଳି ମୁଣ୍ଡରେ ଦେଖିଲେ ସିଧା କଲେଜରୁ ନାଁ କଟେଇ ଗାଁକୁ ପଠେଇ ଦେବି । ଯା ପଳା ମୋ ସାମ୍ନାରୁ । ସୁରେନ୍ଦ୍ର ଜାଣେ ବରୁଣ ତା ସାନ ଭାଇ ପାଇଁ ବ୍ୟସ୍ତ ହୁଏ । ପଢ଼ାପଢ଼ି ଠିକ୍ ସମୟରେ କରୁନାହିଁ ବୋଲି ଅଭିଯୋଗ କରେ । କିନ୍ତୁ ଆଜି ପୁଣି ଏମିତି କ'ଣ ହେଲା ଯେ ବରୁଣ ଏତେ ବକୁଛି ? ସୁରେନ୍ଦ୍ର ତାକୁ ସାଙ୍ଗରେ ଧରି ଆସି ଫରେଷ୍ଟ ପାର୍କରେ ବସିଲା । କହିଲା - କିରଣ ବଡ଼ ପିଲା ହେଲାଣି, ତାକୁ ତୁ ଏତେ ପାଟି କଲେ ହବ ? ଆଜି ପୁଣି ଏମିତି କ'ଣ କଲା ଯେ ତୁ ତାକୁ ଏତେ ଗାଳିମନ୍ଦ କରୁଛୁ ? ସେ ଟିକେ ଡ଼ରି ଯାଇଛି ବୋଧେ ତୋ ପାଟି ଶୁଣି ।

ନାଁ ରେ, ସୁର ତୁ ଜାଣିନୁ । ଏଇ ଦୁଇ ତିନି ମାସ ହବ ମୁଁ ତାକୁ ବରାବର ଲକ୍ଷ୍ୟ କରୁଛି । ବର୍ଷେ ଦେଢ଼ ବର୍ଷ ଠିକ୍ ଚାଲିଥିଲା । କଲେଜ ଟିଉସନ୍ ସାରି ଠିକ୍ ସଂଧ୍ୟାରେ ବସାରେ ପହଞ୍ଚୁଥିଲା । ସବୁଦିନ ଏବେ ଦେଖୁଛି ତାର ଘରକୁ ଫେରିବାକୁ ଆଠଟା ନଅଟା ବାଜୁଛି । ହଁ ମୁଁ ମାନୁଛି ସାଙ୍ଗମାନଙ୍କ ସହିତ ସେ କେବେ କେମିତି ସିନେମା ଗଲା କି ଗପସପ କଲା, ମୁଁ ସେଥିପାଇଁ ବ୍ୟସ୍ତ ନୁହେଁ । କିନ୍ତୁ ମୁଁ ଏବେ ଅଧିକାଂଶ ସମୟରେ ଦେଖୁଛି ସେ ମନ୍ଦିର ସାମନା ଗଳିରେ ଲଟପଟ ହେଉଛି । କାହା କାହା ସାଙ୍ଗରେ ଘଣ୍ଟା ଘଣ୍ଟା ଧରି ଗପୁଚି । ମୋ ଆଖିରେ ପଡ଼ିଗଲେ ଚୋରଙ୍କ ପରି ଖସି ଯାଉଚି । ଆଜି ମୋ ଆଖିରେ ପଡ଼ିଗଲା । ମୁଁ ଘରେ ଆସି ପହଞ୍ଚିବାର ଘଣ୍ଟାଏ ପରେ ବାବୁ ହଲି ଦୋହଲି ଆସୁଛନ୍ତି । ପଚାରିବାରୁ କହୁଛି କ'ଣ ନା ମୁଁ ତାଙ୍କ ଠାରୁ ନୋଟ୍ ଆଣିବାକୁ ଅପେକ୍ଷା କରିଥିଲି । ବୁଝିଲୁ ସବୁ ମିଛ । ଆଉ କଉଠି ଜାଗା ମିଳିଲାନି ସେ ଅନ୍ଧାରିଆ ଗଳିଛଡ଼ା । ମୁଁ କହିଲି - ହଁ ସେ ମନ୍ଦିର ପାଖରେ ବହୁତ ଭିଡ଼ ମୁଁ ଦେଖିଛି । ଅଧିକାଂଶ କଲେଜ ପିଲା, ମେଘାକୁ ନେଇ ଏବେ ଦିନେ ଯାଇଥିଲି ଯେ ମୁଁ ବାହାରେ ଅପେକ୍ଷା କଲି ଅବଶ୍ୟ । ସ୍କୁଲ କଲେଜ ପାଖତ ବହୁତ ପିଲାଙ୍କ ଆତଯାତ ।



ବରୁଣ ବିରକ୍ତ ହୋଇ କହିଲା - ତୁ ଛୋଟ ଚାନା ଜାଣିଚୁ । ଆମେ କ'ଣ ସ୍କୁଲ କଲେଜରେ ପଢୁନଥିଲେ । ପାଠଶାଠ କିଛି ନ ପଢ଼ି ମନ୍ଦିର ସାମନାରେ ଲାଇନ୍ ଲଗାଉଥିଲେ । ତୁ ଜାଣି ସେ ମନ୍ଦିର ଗଳିରେ ଡ୍ରଗସ, ଗଞ୍ଜେଇ କାରବାର ଚାଲିଛି । ଭାରି ଖରାପ ଯାଗା ହୋଇଗଲାଣି ସେଥିପାଇଁ ଏ ବୟସର ପିଲାମାନେ ସେଠି ଲାଇନ୍ ଲାଗାଉଛନ୍ତି । ବାପ ମାଆଙ୍କରତ ଅଜସ୍ର ପଇସା, ପୁଅ ପଛେ ଗଆଡ଼େ ନର୍କକୁ ଯାଉ । ସେଥିପାଇଁ ସେ ସବୁ ଯାଗାକୁ ଯାଇ ତାଙ୍କ ସହିତ ମିଶିବାକୁ ମୁଁ କିରଣକୁ ମନା କରେ । ସାଙ୍ଗଙ୍କ ସାଙ୍ଗରେ ମିଶି ଟିକେ ଘଷୁଘଷୁ ମରିବ ଯେ । ବାପା ସିଆଡ଼େ ଉପବାସ କରି କଷ୍ଟେ ମଷ୍ଟେ କିଛି ପଇସାପତ୍ର ପଠାଉଛି, ମୋ ଅବସ୍ଥା କଥା ତ ଜାଣୁ । ତାର ପାଇଁ ଗୋଟେ ଘରଭଡ଼ା ନେଇ ମୁଁ ରହିଲି । ନହେଲେତ ମେସ୍‌ପେସ୍ ଦେଖି କେଉଁଠି ଚଳେଇ ନେଇଥାନ୍ତି । ମୁଁ କ'ଣ ମିଛରେ ପାଟି କରୁଛି ।

ସୁରେନ୍ଦ୍ର ବରୁଣକୁ କାବା ହୋଇ ଅନାଇଲା । ମେଘାକୁ ନେଇ ସେ ଦିନେ ସେ ମନ୍ଦିର ପାଖ, ଭିଡ଼ ଦେଖିଛି । ତା ହେଲେ ସେଠି ସବୁ ଏଇ ବେପାର ଚାଲିଛି । ପୋଲିସକୁ ଜଣାଇ ଆସି ତା ଗାଡ଼ି ଅଟକାଇଲେ । ସୁରେନ୍ଦ୍ର ପଛପଟରୁ ଏହା ବାବୁ ହେବାକୁ ଚିତ୍କାର ଶୁଣି ଅଟକି ଗଲା । ହଠାତ୍ ତାର ମନେ ପଡ଼ିଗଲା ମୁଣ୍ଡରେ ହେଲମେଟ୍ ନାହିଁ । ଗାଡ଼ି ଷ୍ଟାର୍ଟ ବନ୍ଦ କରି ସେ ପଛ ସିଟ୍‌ରୁ ହେଲ୍‌ମେଟ୍ କାଢୁଛି ଦୁଇଜଣ ପୋଲିସ୍ ତା ପାଖକୁ ଦଉଡ଼ି ଆସିଲେ । କହିଲେ ଲାଇସେନ୍ସ କାଢ଼ । ଜଣେ ପୋଲିସ୍ ତା ହାତକୁ ଯାବୁଡ଼ି ଧରିଲା କହିଲା ଏତେ ଜୋର୍‌ରେ ପଛରୁ ଡ଼ାକୁଛୁ କ'ଣ ଶୁଭୁ ନାହିଁ । ସୁରେନ୍ଦ୍ର ହାତ ଛଡ଼ାଇ ନେଇ ଡ଼ିକି ଖୋଲିବା ଉପରେ ଅନ୍ୟ ଜଣଙ୍କ ତା ଡ଼ିକି ଭିତରେ ଥିବା ପ୍ୟାକେଟ ଦୁଇଟା ଉଠାଇ ନେଲା କହିଲା - ଇଏ କ'ଣ ? ଏକୁ ଖାଉଛ ନା କାରବାର କରୁଛୁ ? ଚାଲ ଚାଲ ଥାନାକୁ । ସୁରେନ୍ଦ୍ର ପ୍ୟାକେଟ ଦୁଇଟା ତା ହାତରୁ ଆଣିବା ଭିତରେ ତତେ ପୋଲିସ ତା ପିଠିରେ ପାହାରେ ପକାଇଲା ବାଡ଼ିରେ । ସୁରେନ୍ଦ୍ରର ତାଳୁରୁ ତିଳିପା ଯାଏ ଜଳିଗଲା । ସୁରେନ୍ଦ୍ର ରାଗରେ ହଠାତ୍ ପୋଲିସ୍ ଗାଲକୁ ଚାପୁଡ଼ାଏ ମାରିଲା । ଦୁର୍ଭାଗ୍ୟତାର, ହାତ ମୁଦିର ପଥର ପୋଲିସ୍ ଗାଲରେ ଗଳିଯାଇ ରକ୍ତ ବାହାରି ପଡ଼ିଲା । ପାଟିତୁଣ୍ଡ ହେଲା । ଛକ, ଯାଗା, କିଛି ଲୋକ ମଧ୍ୟ ଜମିଗଲେ । ଘଟଣାଟି ଯେ ଏଭଳି ଗୋଟେ ମୋଡ଼ ନବ ସେ ଆଦୌ ଭାବି ନଥିଲା ।

ଆଉ କିଏ ସମ୍ଭାଳେ ତାକୁ, ପିଟିପିଟି ଥାନାକୁ ଆଣି ଥାନାରେ ପୁରାଇ ଥାନା ଇନଚାର୍ଜ ନିକଟରେ ଅଭିଯୋଗ କଲେ । ଡ୍ରେସରେ ଥିବା ସମୟରେ ପୋଲିସକୁ ମାଡ଼ ଓ ଡ୍ରଗସ୍ ସପ୍ଲାୟ ଅଭିଯୋଗରେ ସେ ଥାନାରେ ଅଟକି ରହିଲା । ସୁରେନ୍ଦ୍ର ପ୍ରଥମେ ହତବାକ ହୋଇଗଲା । କିଛି ସମୟ ପରେ ନିଜକୁ ସମ୍ଭାଳି ନେଇ ଥାନାବାବୁଙ୍କୁ ସବୁକଥା ବୁଝାଇବାକୁ ଚେଷ୍ଟା କରିଥିଲା । ଖବର ପାଇ ବରୁଣ ଓ ତା ଶଳା ମହେନ୍ଦ୍ର ଆସି ପହଞ୍ଚିଲେ । ବରୁଣ ବହୁତ ବିରକ୍ତ ହେଲା, କହିଲା - ମୁଁ ତତେ ଆଗରୁ ମନା କରିଥିଲିନା ଏ ସବୁଥିରେ ପଶିବୁ ନାହିଁ । ଏ ସବୁରେ



ପୋଲିସ୍ ବାଲାଙ୍କ ହାତ ଥାଏ । ନ ହେଲେ ଏତେ ଶୀଘ୍ର ସେମାନେ ତତେ ଧରିଥାନ୍ତେ କିପରି ? ସେଇ ଯାଗାକୁ ସେମାନେ ତତେ ଫଲୋକରି ଆସିଛନ୍ତି । ମରାମରି ନ କଲେ ମଧ୍ୟ ସେମାନେ ଏତେ ଧରିଥାନ୍ତେ । ପୋଲିସ୍‌କୁ ତା ଡ୍ରେସ୍‌ରେ ଥିବା ବେଳେ ମାରି ରକ୍ତାକ୍ତ କରିଛୁ । ସେମାନେ ଗୋଟେ ବଡ଼ ଅପରାଧ ବୋଲି ବିଚାର କରିବେ । ମିଛଟାରେ ଏ ସମସ୍ୟାରେ ପଡ଼ିଲୁ ଆସି ।

ହଉ ଯାହା ହବାର ହେଇଛି, ମହେନ୍ଦ୍ର ଭାଇ ମୁଁ ଦେଖୁଛୁ କ'ଣ କରାଯାଇ ପାରିବ । ସେମାନଙ୍କ କଥାବାର୍ତ୍ତାରୁ ଜଣାଯାଉଛି ସେମାନେ ତତେ ସହଜରେ ଛାଡ଼ିବେ ନାହିଁ । ସେଦିନ ରାତିରେ କିଛି ସୁବିଧା ହେଇ ପାରିଲା ନାହିଁ । ତା ପରଦିନ ମହେନ୍ଦ ଓ ବରୁଣ ତାକୁ ଜାମିନରେ ଆଣିଲେ ସତ କିନ୍ତୁ ପରବର୍ତ୍ତୀ ବିଚାରରେ ତାକୁ ଛ ମାସ ଜେଲ୍ ହେଇଗଲା । ତାର ଯେତେ କିଛି ଅଭିଯୋଗ କେହି ଶୁଣିଲେ ନାହିଁ ।

ଛ' ମାସ ଜେଲ ଦଣ୍ଡ ପରେ ଆଜି ସେ ବାହାରୁଛି, ବାଟରେ ସେ ମନ ସ୍ଥିର କରି ସାରିଥିଲା । ଆଉ ଏ ସହର ନୁହଁ । ରାଜଧାନୀର ହଳାହଳ ବାୟୁମଣ୍ଡଳ ଭିତରେ ସେ ଅଣନିଶ୍ୱାସୀ ହେଇପଡ଼ିଛି । ଆଉ ଏଠି ନୁହଁ । ତା ଚିନ୍ତା ଭାବନାକୁ ଭାଙ୍ଗି ବରୁଣ କହିଲା - ମେଘା ଘରେ ଅପେକ୍ଷା କରିଥିବ । ତତେ ଛାଡ଼ି ମୁଁ ଚାଲିଯିବି । ସଂଧ୍ୟାରେ ଆସିବି । ତୁ ଖିଆପିଆ କରି ବିଶ୍ରାମ ନେ । ସୁରେନ୍ଦ୍ର କହିଲା - ନା ଭାଇ ଆଉ ଏ ସହର ନୁହଁ । କାଲି ସକାଳୁ ମେଘାକୁ ନେଇ ମୁଁ ଗାଁକୁ ଫେରିଯିବି । ତୁ ବରଂ ସକାଳୁ ଆସି ତୋଠୁ ଛବି ନେଇଯିବୁ ।





# ଅଶୁଭ ସକାଳ

ସ୍ତ୍ରୀ ଲୋକ ମାନଙ୍କର ଅଶିକ୍ଷା ଉପରେ ଆଜିକାଲି ବଡ଼ବଡ଼ ନେତା ମାନଙ୍କର ଭାଷଣ ଏବଂ ତାର ନିରାକରଣ ପାଇଁ ସରକାରୀ ବେସରକାରୀ ସ୍ତରରେ ନାନା ପ୍ରକାର ଚେଷ୍ଟା ପ୍ରଚେଷ୍ଟା ଚାଲିଛି । ଗାଁ ଗହଳିରେ ପ୍ରତ୍ୟେକ ସ୍ତ୍ରୀ ପୁରୁଷଙ୍କ ପାଇଁ ପ୍ରୌଢ଼ ଶିକ୍ଷା କେନ୍ଦ୍ର ଖୋଲୁଛି । ସ୍ୱଇଚ୍ଛାରେ ବହୁ ସ୍ତ୍ରୀ ଲୋକ ଆସି ସେଇ ଶିକ୍ଷା କେନ୍ଦ୍ରରେ ଶିକ୍ଷା ପାଇ ପାରୁଛନ୍ତି । ସେ ସବୁ ଶିକ୍ଷା ତାଙ୍କ ପାଇଁ ତାଙ୍କ ପିଲା ଓ ପରିବାର ପାଇଁ ସେ କେତେ ଉପଯୋଗୀ ଧୀରେ ଧୀରେ ସେମାନେ ଅନୁଭବ କଲେଣି । ଦେଶ, ବିଦେଶର ଖବର ଜାଣିବାର ଆଗ୍ରହ ବଢ଼ିଲାଣି । ମୋର ଏ କାହାଣୀଟି ସେଇଭଳି ଏ ଅଶିକ୍ଷା ଉପରେ ଲିଖିତ ଯାହା ମୁଁ ମୋ ପିଲାଦିନେ ମୋ ବୋଉ ପାଖରୁ ଶୁଣିଥିଲି । ସେ ପ୍ରାୟ ପଚଶ ଷାଠିଏ ବର୍ଷ ତଳର କଥା । ଏବେ ହୁଏତ କେହି ବିଶ୍ୱାସ କରିବେ ନାହିଁ । କିନ୍ତୁ ଘଟଣାଟି ଏଇ ଭଳି ।

ମୋ ବୋଉର ବାପା ଓ ଦାଦା ଦୁଇ ଭାଇ । ମୋ ଅଜା ଥିଲେ ନାରାୟଣ ଚନ୍ଦ୍ର ହାଇସ୍କୁଲର ହେଡ୍‌ମାଷ୍ଟର, ବ୍ରିଟିଶ୍ ଅମଳ କଥା, ସରକାରୀ ଚାକିରୀ ଖଣ୍ଡେ କରିବା ଥିଲା ବଡ଼ ସନମାନର କଥା । ଉଦବାବୁ କହିଲେ ନାଁ ରେ ତାଙ୍କୁ ସାରା ଭଦ୍ରଖରେ ସମସ୍ତେ ଜାଣିଥିଲେ । ତାଙ୍କ ନାଁ ଥିଲା ଉଦୟ ନାରାୟଣ ମହାନ୍ତି । ଗାଁ ଥିଲା ଭଦ୍ରଖ ପାଖ ଆଗରପଡ଼ାରେ । ପ୍ରତ୍ୟେକ ଦିନ ଆଗରପଡ଼ା ଗାଁରୁ ଭଦ୍ରଖ ଯିବା ଆସିବା ଅସୁବିଧା ଥିଲା । ସାଇକେଲ୍ ବ୍ୟତୀତ ଚାଲିବା ଛଡ଼ା ଅନ୍ୟ କିଛି ଉପାୟ ନଥିଲା । ତେଣୁ ଅଜା ସ୍କୁଲ ହଷ୍ଟେଲରେ ରହୁଥିଲେ । ପାଖରେ ମୋ ମାମୁଁ ମଧ୍ୟ ରହୁଥିଲେ । ଆଠ ଦଶ ବର୍ଷ ବୟସ । ତାର ପଢ଼ାପଢ଼ି ନିଜେ ଦେଖିବା ପାଇଁ ସେ ତାଙ୍କୁ ପାଖରେ ରଖିଥାନ୍ତି । ମୋ ବୋଉ ମାମୁଁଙ୍କ ଠାରୁ ତିନି ଚାରିବର୍ଷ ବଡ଼ । ସେ କିନ୍ତୁ ଗାଁରେ ଥାଏ । ଅଜାଙ୍କର କିନ୍ତୁ ତା ପଢ଼ାପଢ଼ି ପ୍ରତି ବହୁତ ନଜର । ଶନିବାର କିମ୍ବା ଛୁଟିରେ ଆସିଲେ ସେ ତାକୁ ଓଡ଼ିଆ ସହିତ କିଛି ଇଂରାଜୀ ମଧ୍ୟ ପଢ଼ାନ୍ତି । ଗୋଟେ ସପ୍ତାହ ପାଇଁ ପଢ଼ା ଦେଇ ଘରକୁ ଗଲେ ସବୁ ପୁଣି ପଚାରି ବୁଝନ୍ତି । ବାକି ରହିଲେ ସାନ ଅଜା, ତାଙ୍କୁ କୋଡ଼ିଏ ଏକୋଇଶ ବର୍ଷ । ତାଙ୍କ ନାଁ ସୁଜୟ । ସେ ଅଜାଙ୍କଠୁ ଦେଖିବାକୁ ଗୋରା, ଭାରି ସୁନ୍ଦର । ଅଷ୍ଟମ ନବମ କ୍ଲାସ ଯାଏ ପଢ଼ି



ପାଠ ପଢ଼ା ବନ୍ଦ କରିଦେଇଥିଲେ । ଗାଁରେ ସମସ୍ତେ ଡ଼ାକନ୍ତି ସୁଜା । ପାଠ ପ୍ରତି ତାଙ୍କର ଆଗ୍ରହ ନଥିଲା । ତାଠୁଁ ବରଂ ତାଙ୍କର ଗୀତବାଜା, ସୁଆଙ୍ଗ, ଯାତରା ପ୍ରତି ବିଶେଷ ଆଗ୍ରହ । ଗଳାଟି ଭାରି ମିଠା । ସମସ୍ତେ ପ୍ରଶଂସା କରନ୍ତି । ଅଜାଙ୍କର ଘର ଜମିବାଡ଼ି ଭଲ । ହଳିଆ ମୂଳିଆ ଥିଲେ ଆଉ ମୂରବି ହିସାବରେ ଥିଲା ଗେହ୍ଲି ମାଉସୀ । ବାଲ୍ୟ ବିଧବା ହେଉ ଅଜାଙ୍କ ବାପା ମାଆ ମରିବା ପରଠୁ ତାଙ୍କ ପାଖରେ ସେଇ ଘରେ ମୁରବୀ କହିଲେ ଚଳେ । ମୋ ଅଜା ଘରକୁ ଆସିଲେ ତାରି ଠାରୁ ସବୁ ଖବର ଶୁଣନ୍ତି ।

ସୁଜା ଅଜା ଯାତରା ଯେ କୌଣସି ଚରିତ୍ରରେ ବାହାରିଲେ ଘନ ଘନ କରତାଳି ପାଇ ତା ମନ ପୂରି ଉଠେ । କେତେ ମେଡ଼ାଲ ମଧ୍ୟ ସେ ପାଉଥିଲେ । ସବୁଥିରେ ମାତି ଅନେକ ସମୟରେ ସେ ରାତିରେ ଘରକୁ ଫେରନ୍ତି ନାହିଁ । ସବୁ କ୍ଷେତ୍ରରେ କିଛି ଦୁର୍ଜନ ଲୋକ ମଧ୍ୟ ଥାଆନ୍ତି । ତାଙ୍କ ସଂଗତାରେ ପଡ଼ି ଆଖଡ଼ା ଘରେ ଅଧିକାଂଶ ଦିନ ରାତି କଟାନ୍ତି । ନିଶାପାଣି କରନ୍ତି । ଗେହ୍ଲି ମାଉସୀ ପଚାରିଲେ, ରିୟଲସେଲ୍ ଚାଲିଛି କହି ବାଁରେଇ ଦିଅନ୍ତି । ଏ ଘଟଣା ଅବଶ୍ୟ ସବୁଦିନ ନୁହଁ ମଝିରେ ମଝିରେ ଘଟୁଥିଲା । ଗେହ୍ଲି ମାଉସୀ  ଧରି ପାରେ ନାହିଁ ।

ଗାଁ ଲୋକସବୁ ଅଜାଙ୍କୁ ଭଲ ପାନ୍ତି । ସୁଜା କଥା କିଛି କିଛି ଜାଣି ମଧ୍ୟ ଅଜାଙ୍କ ଭୟରେ କିଛି କହନ୍ତି ନାହିଁ । ଅଜା ପ୍ରଚଣ୍ଡ ରାଗି । ସେ ସାନ ଭାଇକୁ ବହୁତ ଭଲପାନ୍ତି । ଗୀତ, ବାଜା, ଯାତରା ପାଲା କରିବାରେ ତାଙ୍କର ବିଶେଷ ଆପତ୍ତି ନଥିଲା । କିନ୍ତୁ ଆଉ କିଛି ଅଧିକ ପଢ଼ିଥିଲେ ତାକୁ କେଉଁଠି କିଛି ଚାକିରୀରେ ପୁରାଇଥାନ୍ତେ । ତା ପରେ ଭାବିଲେ ଘରର ଭଲମନ୍ଦ ବୁଝିବା ପାଇଁ କେହିଜଣେ ରହିବା ଦରକାର । କିନ୍ତୁ ଏଭଳି କୁ ସଙ୍ଗରେ ପଡ଼ି ଗଲାଣି ଜାଣିଲେ ସେ ଘରୁ ତଡ଼ି ଦେବେ ।

ଛୁଟୀରେ ଆସିଲେ ସେ ସୁଜାକୁ ଖୋଜନ୍ତି । ସେ କ'ଣ କରୁଛି ନ କରୁଛି ମୋ ଆଈ ମା ପଚାରନ୍ତି । ଆଈ ମାଆ ସେକାଳର ବୋହୂ । ଦୁଇଟି ପିଲାର ମାଆ ହେଇ ମଧ ସେ ଅଜାଙ୍କୁ ତାଙ୍କର ଗମ୍ଭୀର ସ୍ୱଭାବ ଯୋଗୁଁ ବଡ଼ ଭୟକରେ । ମୁଣ୍ଡରେ ଓଢ଼ଣା ଭିତରୁ ସବୁ ପ୍ରଶ୍ନର ଉତ୍ତର ହଁ ବା ନା.ହଁରେ ସାରିଦିଏ । ଦିନ ଯାକତ ଦେଖା ହୁଏ ନାହିଁ । ଯିଏ ଯାହା କାମରେ ବ୍ୟସ୍ତ । ଅଜା ଘରକୁ ଆସିଲେ ଆଈର ଭଲମନ୍ଦ କରି ଖୁଆଇବାକୁ ମନ, କିନ୍ତୁ ସବୁ କାମ ଗେହ୍ଲି ମାଉସୀକୁ ନିଅଣ୍ଟ । ତେଣୁ ଆଈ ମାଆ ସହିତ କଥାବାର୍ତ୍ତା ହେବାରେ କିଛି ଲାଭ ନଥାଏ ।

ଗାଁକୁ ଆସିଲାମାତ୍ରେ ଗାଁ ଲୋକେ ଆସି ଅଜାଙ୍କୁ ଦେଖା କରନ୍ତି । ତାଙ୍କର ସୁବିଧା ଅସୁବିଧା ଭଲମନ୍ଦ ଖବର ଜଣାନ୍ତି । ତାଙ୍କର ଧାରଣା ଅଜା ବହୁତ ପାଠ ପଢ଼ି ବାହାରେ ଚାକିରୀ କରିଛି । ତେଣୁ ଗାଁର ସବୁ ସୁବିଧା ଅସୁବିଧା ସେ ଜାଣିଲେ କିଛି ଉପାୟ କରିବ । ସେଥର ତାଙ୍କର ଅଭିଯୋଗଥିଲା ଗାଁରେ ଗୋଟେ ପୋଷ୍ଟ ଅଫିସ୍ ଖୋଲିବା ପାଇଁ । ପ୍ରକୃତରେ ଗାଁ



ଲୋକେ ସେଇ ଅସୁବିଧାଟା ବେଶୀ ଭୋଗୁଥିଲେ । ଗାଁରେ ପୋଷ୍ଟ ଅଫିସ୍ ନଥିବାରୁ ତାଙ୍କ ପୁଅ ପୁତୁରାଙ୍କଠାରୁ ଆସୁଥିବା ମନିଅର୍ଡ଼ର, ଚିଠି ପତ୍ର ଏପରିକି ଟେଲିଗ୍ରାଫ୍ ମଧ୍ୟ ଦଶ ବାରଦିନ ପଡ଼ିରହୁଥିଲା । ତାଙ୍କ ଗାଁ ଠାରୁ ତିରିଶ ଚାଳିଶ ମାଇଲ୍ ଦୂର ଡ଼ିହରେ ଡ଼ାକ ଘର । ଆଠ ଦଶ ଦିନରେ ଥରେ ଆସେ ପୋଷ୍ଟ ପିଅନ । ଟଙ୍କା ପଇସା ଚିଠି ପଡ଼ିବା ସହିତ କାର୍ଡ଼ ଲଫାପା ମଧ୍ୟ ଦଶବାର ଦିନକୁ ଦେଇଯାଏ । ସବୁ ପାଇଁ ଆଠ ଦଶଦିନକୁ ଅପେକ୍ଷା, ବର୍ଷାଦିନେତ ଆହୁରି ଅସୁବିଧା ତେଣୁ ଗାଁରେ ପୋଷ୍ଟ ଅଫିସଟଃ ଖୋଲିବା ନିହାତି ଜରୁରୀ । ଅଜାଙ୍କ ମନକୁ ପ୍ରସ୍ତାବଟା ପାଇଲା । ସେ ପ୍ରାୟ ପଚାଶ ଶହେ ଲୋକଙ୍କ ଦସ୍ତଖତ ନେଇ କହିଲେ – ଠିକ୍ ଅଛି ମୁଁ ଏଇ ମାସେ ଦୁଇମାସ ଭିତରେ କିଛି ବନ୍ଦୋବସ୍ତ କରିବି । ତମେ ସବୁ ସୁବିଧା ଜାଗାରେ ଗୋଟେ ଘର ଠିକ୍ କର । ସେଇ ସମୟରେ କିଛି ଲୋକ କହିଲେ – ସୁଜା ଆମର ପୋଷ୍ଟ ମାଷ୍ଟର ରହିବ । ସୁଜାର କିଛି ଦୁର୍ଗୁଣ ଥିଲା ସତ, କିନ୍ତୁ ଲୋକେ ତାକୁ ଭାରି ଭଲପାଉଥିଲେ । ଆଖଡ଼ା ଘରେ ସାଙ୍ଗସାଥିଙ୍କ ସହିତ ନିଶାପାଣି କରି ରାତି କଟାଇବା ସତ୍ୱେ ସେ ପରୋପକାରୀ । ଗାଁ ଲୋକଙ୍କ ଅଭାବ ଅସୁବିଧା କଥା ଜାଣିଲେ ସେ ଆଗକୁ ବାହାରି ଆସି ସବୁ ବୁଝାବୁଝି କରେ । ତାଙ୍କ ନିଜ ଘରୁ ଉଦ୍ଭଳପତ୍ର କିଛି ଟଙ୍କା ପଉସାବି ସାହାଯ୍ୟ କରିଥାଏ । ତେଣୁ ଗାଁରେ ପୋଷ୍ଟ ଅଫିସ୍ ବସିବ ଶୁଣି ସମସ୍ତେ କହିଲେ ସୁଜା ନାଁ । ସେ କିଛି ଇଂରାଜୀ ପଢ଼ି ଲେଖି ଜାଣିଛି, ଚିଠିପତ୍ର ଲେଖିବା ମନି ଅର୍ଡ଼ର କରବା ସବୁ କାମ ସେ ପାରିବ । ତାଙ୍କ ଆଖିରେ ଆଉ କେହି ପଡ଼ିଲେ ନାହିଁ । ସେଇକଥା ସ୍ଥିର ହେଲା ।

ସତକୁ ସତ ମାସେ ଦୁଇମାସ ଉପରେ ଆଗରପଡ଼ାରେ ଗୋଟେ ପୋଷ୍ଟ ଅଫିସ୍ ଖୋଲିଲା । ବହୁ ଆଡ଼ମ୍ବରରେ ପୂଜାପୂଜି କରି ଗୋଟେ ବଡ଼ ବାକ୍ସରେ ତାଲା ପଡ଼ି ସୁଜାକୁ ଦିଆଗଲା । ସେ ରହିଲା ପୋଷ୍ଟ ମାଷ୍ଟର ଆଉ ପିଅନ ଅପର୍ରି । ସେ ସମୟରେ ସୁଜାର ଦରମା ମାସକୁ ପାଞ୍ଚ ଟଙ୍କା, ଚାକିରୀରେ ରହିବାକୁ ସୁଜା ଅଜାଙ୍କର ବିଶେଷ ମନ ନଥିଲା । ଫୁଲାଫାଙ୍କିଆ ହେଇ ବୁଲିବାକୁ ମନ? ଅବଶ୍ୟ ଯାତରା କିମ୍ୱା ଡ୍ରାମା କରିବାରେ ଅସୁବିଧା ନଥିଲା । ସେ ସବୁ କାମ ରାତିରେ, ତା ଛଡ଼ା ଆଖଡ଼ା ଘରେ ବନ୍ଧୁଙ୍କ ସହିତ ନିଶାପାଣି ପାଇଁ ହାତକୁ କିଛି ପଇସା ଆସିବ । ତେଣୁ ଦିନଟା କୌଣସିମତେ ମାଡ଼ିମକଚି କରିଗଲେ ଭାଇ ଆଉ ଅସନ୍ତୁଷ୍ଟ ହବ ନାହିଁ । ବଡ଼ ଭାଇକୁ ସାନ ଅଜାଙ୍କର ଭାରି ଭୟ । ତା ଛଡ଼ା ଗେହ୍ଲା ମାଉସୀ ଅଛି । ଭାଇଠାରୁ ସୁଜା ଅଜାଙ୍କର ଗେହ୍ଲା ମାଉସୀକୁ ଆହୁରି ଅଧିକ ଭୟ । ଗାଁର ସବୁ ଖବର ତା ପାଖରେ ପହଞ୍ଚିଯାଏ । ତାର ପିଲାପିଲି କିଛି ନଥିବାରୁ ସେ ତାଙ୍କ ଘରେ ଭାଇର ଦୁଇ ପିଲାଙ୍କୁ ଓ ସୁଜା ଅଜାଙ୍କୁ ଆବୁରି ଧରିଥାଏ ।

ଶନିବାର ଅଜା ପ୍ରାୟ ଗାଁକୁ ଆସନ୍ତି । ରବିବାର ଛୁଟୀ, ଛୁଟୀରେ ଆସିଲେ ଆଈ ଓ ଗେହ୍ଲା ମାଉସୀ ନାନା ପ୍ରକାର ରନ୍ଧାରନ୍ଧି, ଗାଧୁଆ ସାରି ଆସିଲେ ଆଉ ତାଙ୍କ ଖାଇବା ବାଡ଼ିଦେଇ ଦୂରରେ ଓଢ଼ଣା ପକାଇ ଠିଆ ହୁଏ । ଗେହ୍ଲା ମାଉସୀ ତାଙ୍କ ପାଖରେ ବିଂଚଣାଧରି ବସିଥାଏ ।



ସେଇ ଅବଶରରେ ଗେହ୍ଲା ମାଉସୀ ଘରର ସବୁ ଖବର ଜଣାଇବା ଉଚିତ୍ ମନେ କରେ । ଋଷବାସ ଠାରୁ ଆରମ୍ଭ କରି ହଳିଆ ମୂଳିଆ କଥା । ମୋ ବୋଉ କଥା ବି କହିବାକୁ ଭୂଲେ ନାହିଁ । କହେ ସୁଧୀକୁ ଚଉଦ ପୁରିଗଲା । ତୁତ ଖାଲି ତା ପାଠ ପଢ଼ା ଦେଖୁଛୁ । ତା ସହିତ ଭଲ ପିଲାଟିକୁ ମଧ୍ୟ ଆଖି ପକା । ଅଜା ସବୁ ଶୁଣନ୍ତି କିନ୍ତୁ କିଛି ମନ୍ତବ୍ୟ ଦିଅନ୍ତି ନାହିଁ । ଆଉ ବର୍ଷେ ଦି ବର୍ଷ ଗଲା ପରେ ଝିଅର ବାହାଘର କରିବାକୁ ତାଙ୍କର ଇଚ୍ଛା । ପୁଅ ତାଙ୍କ ପାଖରେ ରହି ପଢୁଛି । ତା ବୋଲି ଝିଅକୁ ମୂର୍ଖ କରିବା ଉଚିତ ନୁହେଁ ।

ସେଇ ଗପସପ ଭିତରେ ସାନଅଜା କଥା ପଡ଼େ । ଗେହ୍ଲା ମାଉସୀ କହେ – ଦେଖ ଉଦ ତୁ ଏଥର ସୁଜା କଥାଟିକେ ବୁଝ । ତୁ ତ ସବୁଦିନେ ବାହାରେ ରହିଲୁ । ଶଚିତ ଦୁଇପିଳାଙ୍କ ମାଆ ହେଇବି ନୂଆବୋହୂ ପରି ଘର କଣରେ । ତା ପୁଅ, ଝିଅଙ୍କ ବୟସବି ତାକୁ ଜଣା ନଥିବ । ସୁଜାକୁ ଆସି ଚବିଶବର୍ଷ ହବ । ତୁ ଏକୋଇଶ ବର୍ଷରେ ଘର ସଂସାର କଲୁ । ଚାକିରୀ କଲୁ । ସୁଜା ଏକ କୂଳରେ ଲାଗିଲା ଜାଣ, କିନ୍ତୁ ଗାଁରେ ନାନା କଥା ତା ନାରେ ଶୁଣୁଛ । ଗାଁ ଆଖଡ଼ାରେ ଅଧାଦିନ କଟାଉଛି ତ ସାଙ୍ଗ ଭେଣ୍ଡିଆଙ୍କ ସହିତ । କିଏ କହୁଚି ମଦ ପିଉଛନ୍ତି ତ, କିଏ କହୁଚି ଗଞ୍ଜେଇ ଟାଣୁଛନ୍ତି । ମୁଁ ପଚାରିଲେ କହୁଛି, ରିୟଲସଲ୍ ଚାଲିଛି । ଅଧାଦିନ ରାତିରେ ଘର ବାହାରେ କାଟୁଛି, କହୁଛି ଆଖଡ଼ା ଘରେ ଭୋଜି, ସତ କି ମିଛ କିଏ ଜାଣେ ? ମୁଁ ମାଇପିଟା କୁଆଡ଼େ ଯିବି ? ଘରେ ପୁଣି ତୋର ବଢ଼ିଲା ଝିଅଟିଏ, ଏ ସବୁ କଥା ଭାବି ଆଜି ତତେ କହୁଛି । ଭେଣ୍ଡିଆ ଟୋକା ଏ ଭଳି ବାହାରେ ରାତି କଟାଇବା ଭଲ ନୁହେଁ । ଏଇ ବର୍ଷ ତା ବାହାଘର କରିଦବା । ବେକରେ ପଘା ପଡ଼ିଲେ ବାଟକୁ ଆସିବ । ତୁ ଯଦି କହିବୁ ମୁଁ ସାଙ୍ଗେ ସାଙ୍ଗେ ଝିଅ ଠିକ୍ କରିବି । ମୋର ଦୂର ସମ୍ପର୍କୀୟ ଭଣଜା ଗୋଟେ, ତାର ଝିଅ ପନ୍ଦର ଶୋଳବର୍ଷ ହବ । ସୁଜାକୁ ଭଲ ମାନିବ । ସୁନ୍ଦର ଝିଅଟିଏ, ଏଇ ଗତଥର ସୀତାକୁଣ୍ଡ ଯାତ୍ରାରେ ଦେଖା ହେଇଥିଲା । ଝିଅପାଇଁ ବର ଖୋଜୁଛି କହୁଥିଲା, ମୋ ପୁତୁରାକଥା କହିଲେ ସାଙ୍ଗେ ସାଙ୍ଗେ ରାଜି ହବ । ତୁ ଭାବିଚିନ୍ତି କହ, ମୁଁ ତାକୁ ଖବର ଦେବି ।





ସୁଜା ଅଜା କଥା ଶୁଣି ଅଜା ରାଗି ନିଆଁ ହେଇଗଲେ । କହିଲେ ଏମିତି ସବୁ କାଣ୍ଡ କଲାଣି ତୁ ଆଗରୁ ମତେ କହିନଥିଲୁ କାହିଁକି ? ମଦୁଆ ଗଞ୍ଜେଡ଼ ହବା ପରେ ମତେ କହୁଛୁ । ଆଉ ନାଁ ଧରି କହିଲେ - ଝଟିତ ଗୋଟେ ଘୁଷୁରୀ, ସେଟା କିଛି ବୁଝେ ନାଁ ଜାଣେ ? ଜାଣିଲେବି ଗେହ୍ଲା ଦିଅର କଥା ଲୁଚେଇଥିବ । ଆଜି ଆସୁ ସୁଜା ତା କଥା ମୁଁ ବୁଝୁଛି । ଗାଁରେ ରହି ଏଇସବୁ କିର୍ତ୍ତୀ ? ମୁଁ ଭାବିଥିଲି ଗୀତ ନାଟ ପ୍ରତି ତାର ଗୋଟେ ଶ୍ରଦ୍ଧା ଅଛି, କରୁଛି କରୁ, ଖଣ୍ଡେ ଚାକିରୀ ହୋଇଗଲେ ମନ ବଦଳି ଯିବ । ତା ସହିତ ଯାହା କରିବ କରୁ । ଆଖଡ଼ା ଘରେ ରହି ତାହାଲେ ସେ ଏଇ କିର୍ତ୍ତୀ କରୁଛି । ତା ପରେବି ତୁ କହୁଛୁ ତାକୁ ବାହା କରେଇ ଗୋଟେ ପର ଝିଅକୁ ତା ବେକରେ ବାନ୍ଧିବି ? ଯାହାର ଚରିତ୍ର ଠିକଣା ନାହିଁ, କୁଆଡ଼େ ଯାଉଚି କୁଆଡ଼େ ଆସୁଚି ଜଣାନାହିଁ । ଡ଼ାକ ତାକୁ । ମୁଁ ତା ସାଙ୍ଗେ କଥା ହୁଏଁ, କ'ଣ ଭାବିଛି କି ସେ ? ଏ ଘରେ କ'ଣ ମୁରବି ନାହାଁନ୍ତି ?

ଗେହ୍ଲା ମାଉସୀ ଦେଖିଲା ଭଉ ରାଗିଗଲାଣି, ସେ ଟିକେ ନରମି ଗଲା । କହିଲା - ଦେଖ ଭଉ, ମୁଁ ତତେ ଯାହାସବୁ କହିଲି ସେ ସବୁ ଶୁଣା କଥା । ତୁ କି ମୁଁ କେହି ଦେଖି ନାହାଁନ୍ତି । ସାଙ୍ଗସାଥି ମେଳରେ ଢ଼ୋକେ ଦିଢ଼ୋକେ ପିଇ ଦଉଥିବ । ଘରକୁ ମାତାଲ ହେଇ ଫେରିବା ମୁଁ କେବେ ଦେଖି ନାହିଁ । ସୁଧାତ ତା ଜୀବନ । ତାକୁ କେତେ ଆଦର କରେ, ତା ପାଇଁ ଗୋଟେ ହାମୋନିୟମ କିଣି ଦେଇଛି । ଆମ ବଂଶ ରକ୍ତ ତା ଦେହରେ, ସେ ଏତେ ତଳକୁ ଖସିଯିବ ନାହିଁ । ତା ବେକରେ ଘଣ୍ଟି ବାନ୍ଧିଦେଲେ ଠିକ୍ ବାଟକୁ ଆସିବ । ପାଖରେ ସ୍ତ୍ରୀ ଥିଲେ ମୋଡ଼ିମାଡ଼ି ହେଇ ରହିବ । ତୁ ରାଗିକୁ ଉରିପଦ କହିବୁ । ସେ ଭେଣ୍ଡିଆ ପିଲା, କ'ଣ ନାହିଁ କ'ଣ କରିବ । ତାକୁ ଅପମାନ ଲାଗିବ । କିଛି ନ କହି ଆମେ ତା ବାହାଘର କରିଦବା । ଆସନ୍ତା ବୈଶାଖରେ ଭଲ ତିଥି ଅଛି । ମୋ ଭଣଯା କରୁଣା ଝିଅ ମୋ ମନକୁ ପାଇଛି । ତୁ ଓ ସୁଜା ଯଦି ଦେଖିବ ଦେଖ, ନହେଲେ ମୁଁ ସେଇଠି ଠିକଣା କରିଦେବି । ତୁ ଆଉ ଡ଼େରି କର ନା ? ଆମ ଘରେ ଖାଇବା ପିନ୍ଧିବା ଅସୁବିଧା ନାହିଁ । ସୁଜାବି ଯାହି ତାହି ଖଣ୍ଡେ ଚାକିରୀ କଲାଣି । ଆଉ ଚିନ୍ତା କ'ଣ ? ତୁ ଆଉ ରାଗରୋଷ ଛାଡ଼ି ତାକୁ ବାହାଘର କଥା ଜଣାଇ ଦବୁ । ସବୁ କାମ ଭଲରେ ଛିଣ୍ଡୁ ।

ଶେଷରେ ସେୟାହିଁ ହେଲା । ସୁଜାର କେବଳ ଗୋଟିଏ ସର୍ତ୍ତ ଯେ ସେ ଆଗପରି ଯାତ୍ରା ଓ ପାଲାରେ ଯୋଗ ଦବ । ଉରି ଛଅ ମାସ ଭିତରେ ମଣି ଘରକୁ ବୋହୂ ହେଇ ଆସିଲା । ମୋ ବୋଉ ଖୁଡ଼ୀକୁ ଦେଖି ଭାରି ଖୁସି । ତାଠୁ ବୟସରେ ଦୁଇଉରିବର୍ଷ ବଡ଼ । ପନ୍ଦର ଶୋଳ ବର୍ଷର ଝିଅଟିଏ । ଗୋରା ତକ ତକ । ବଡ଼ ବଡ଼ ଆଖି । ମୁଣ୍ଡରେ ବହୁତ ବାଳ, କଂସା ପରି ଖୋସାଟିଏ ବାନ୍ଧିଥାଏ । ଆଗଦାନ୍ତ ଦୁଇଟି ସାମାନ୍ୟ ଉଚ୍ଚ କିନ୍ତୁ ତା ମୁହଁକୁ ଭଲମାନେ । ଦାବୁଡ଼ି ମୁହଁ, ମଣି ସମସ୍ତଙ୍କ ମନକୁ ପାଇଗଲା । ମୋ ଅଜା ମଧ୍ୟ ନୂଆ ବୋହୂ ମୁହଁ ଦେଖି ହଲେ କାନଫୁଲ



ଦେଲେ । ଗେହ୍ଲା ମାଉସି କହିଲା - ଦେଢ଼ସୁର ହେଲେ କ'ଣ ହେଲା ? ଅଷ୍ଟମଙ୍ଗଳା ଭିତରେ ଦେଖିଲେ କିଛି ଦୋଷ ନାହିଁ । ମୋ ବୋଉକୁ ଖୁଡ଼ି ଭାରି ପସନ୍ଦ ହେଲା, କିନ୍ତୁ ତାର ଅଭିଯୋଗ ଖୁଡ଼ୀ କିଛିପାଠ ପଢ଼ିନି । ସୁଜା ଅଜା ମନବି ଭାରି ଖୁସି ଜଣାପଡ଼େ । ଅଫିସ୍ ଛଡ଼ା ବିଶେଷ ଆଉ କୁଆଡ଼େ ବାହାରେ ନାହିଁ । ଆଖଡ଼ାକୁ ଯାଏ ସତ କିନ୍ତୁ ଫେରିବାକୁ ଡ଼େରି କରେ ନାହିଁ କିମ୍ବା ରାତିରେ ରହେ ନାହିଁ । ତାର ଆଚରଣ ଦେଖି ଗେହ୍ଲା ମାଉସୀ ଖୁସି । ଅଜାଙ୍କୁ ମଧ୍ୟ ଜଣାଇଦିଏ । ମୋ ବୋଉ କଥା ଛାଡ଼, ସେତ ଖୁଡ଼ୀ ପାଖ ଛାଡ଼େ ନାହିଁ । କେମିତି ସେ ପାଠ ପଢ଼ିବ ତାର ସେଇ ଚିନ୍ତା । ସୁଜା ଅଜା ନଥିଲା ବେଳେ, ସେ ବହିପତ୍ର ସ୍ଲେଟ୍ ଖଡ଼ି ଧରି ଖୁଡ଼ୀ ପାଖରେ ହାଜର ହେଇଯାଏ । ମଣିଆଇର ଆଗ୍ରହ ନଥିଲେବି ପଢ଼ାଲେଖା ଆରମ୍ଭ କଲା, ସୁଜା ଅଜା ପୋଷ୍ଟ ଅଫିସ୍ ଗଲାପରେ ଆଉ କାମ କ'ଣ ? ଘର କାମତ ମୋ ଆଇ ଓ ଗେହ୍ଲା ମାଉସୀକୁ ନିଅଣ୍ଟ ।

ଲହୁଁ ଲହୁଁ ଛଅ ସାତ ମାସ କଟିଗଲା, ସୁଜା ଢ଼ଙ୍ଗଢ଼ାଙ୍ଗ ଦେଖି ଗେହ୍ଲା ମାଉସୀ ଭାରି ଖୁସି । ଔଷଧ ଠିକ୍ କାମ୍ କରିଛି । ସୁଜାର ରାମନବମୀ ଯାତ୍ରା ଆଗରେ ଥାଏ । ସେ ଘରେ କହି ଯାତ୍ରା ରିୟଲସଲ୍‌କୁ ଯାଉଥାଏ । ଡେରିହୁଏ ଫେରିବାକୁ ସତ କିନ୍ତୁ ରାତିରେ ଘରକୁ ଫେରିଆସେ । ଯାତଦିନ ଗେହ୍ଲା ମାଉସୀକୁ କହେ । ସମସ୍ତଙ୍କୁ ନେଇ ଯିବାକୁ । ସମସ୍ତଙ୍କ ଉପରେ ଯେ ତା ସ୍ନୀତି ଥାଏ ସେ କଥା ମାଉସୀ ବୁଝିପାରେ । ତା କଥା ରଖେ, ସତରେ ଯାତ୍ରା ପାଲାରେ ସୁଜାର ଆକ୍‌ଟିଙ୍ଗ୍ ସମସ୍ତଙ୍କୁ ଠାରୁ ନିଆରା, ଷ୍ଟେଜକୁ ବାହାରିଲା ମାତ୍ରେ ତାଳିମାଡ଼ । ଘରର ସମସ୍ତେ ଦେଖି ବଡ଼ ଖୁସି ହୁଅନ୍ତି । ସୁଜାର ପ୍ରଶଂସାରେ ମଣି ଆଈ ମଧ୍ୟ ଖୁସି ହେଇ ଯାତରୁ ଫେରେ ।

କିନ୍ତୁ ମୋ ବୋଉ ମଣିଆଇର ପାଠ ପଢ଼ା ପଛରେ ଲାଗିଥାଏ । ନିଜର ପଢ଼ାପଢ଼ି ସାରି ସେ ଖୁସୀକୁ ଧରି ବସେ, ଘରକୁ ସବୁ କାମ ଗେହ୍ଲା ମାଉସୀ ଓ ତା ବୋଉକୁ ନିଅଣ୍ଟ । ଅଜା ମଝିରେ ମଝିରେ ଆସି ଗେହ୍ଲା ମାଉସୀ ପାଖରୁ ସବୁ ଖବର ବୁଝିଯାନ୍ତି । ଏ ଭିତରେ ବର୍ଷେ ଉପରେ ବିତିଗଲାଣି । ତଥାପି ଅଜାଙ୍କ ମନ ମାନେ ନାହିଁ । ଘରେଥିବା ସମୟରେ ସେ ଦେଖନ୍ତି ସୁଜାର ବନ୍ଧୁମାନେ କେହି କେମିତି ତାକୁ ଖୋଜି ଆସନ୍ତି । ସୁଜା ଅଜାଙ୍କ ବନ୍ଧୁମାନଙ୍କ ଉପରେ ତାଙ୍କର ଭରସା ନାହିଁ । ନିଶାପାଣି କରିବାକୁ ପଇସା ପାନ୍ତି କେଉଁଠୁ ? ସୁଜାଅଜା ମାସକୁ ପାଞ୍ଚଟଙ୍କା ଦରମା ପା'ନ୍ତି । ସେ ହିସାବ ଅଜା ରଖନ୍ତି ନାହିଁ । କିନ୍ତୁ ନିଶାପାଣି ପାଇଁ ବହୁତ ପଇସା ଦରକାର ପଡ଼େ ସେ ଜାଣନ୍ତି । ଭାବିଲେ ଗେହ୍ଲାକୁ ପଚାରିବେ କିନ୍ତୁ, ପୁଣି ଚିନ୍ତା କଲେ କାଳେ ସେ ଭାବିବ ସୁଜା ଦରମା ହିସାବ ମାଗୁଛି । ନାଁ - ଯେମିତି ଚାଲିଛି ଚାଲୁ । ସେ ମଧ୍ୟ ଘରକୁ ଆଉ ବେଶୀ ଆସି ପାରୁ ନାହାଁନ୍ତି । ପିଲାଙ୍କ ପରୀକ୍ଷା ସମୟ, ତା ଛଡ଼ା ପରେ ଭାଇବୋହୂ । ସେ ତୋ ବୋଉ ସହିତ ଏପଟ ସେପଟ ହୁଏ । ଛୁଆଁଛୁତିତ ଅଛି କେତେବେଳେ ପୁଣି ସାମନା ସାମନି ହେଇଯିବ ? ତେଣୁ ସେ ଘର ଭିତରୁ ବାହାରିଲାବେଳେ ମୋ ବୋଉନାଁ ଧରି ଡ଼ାକନ୍ତି । ଅଜାଙ୍କ



ପାଟିଶୁଣିଲେ ମଣି ଆଈ ତା ଶୋଇବା ଘରକୁ ପଶିଯାଏ । ଅଜା ତାଙ୍କ ନିତ୍ୟକର୍ମ ଓ ଖିଆପିଆ ସାରି ଦାଣ୍ଡ ପିଣ୍ଡାକୁ ଚାଲିଯାନ୍ତି, ତାଙ୍କର ବହୁତ ସମୟ ସେଇ ଗାଁ ଲୋକଙ୍କ ମେଳରେ କଟେ ।

ଏ ଭିତରେ ବର୍ଷେ ଦେଢ଼ ବର୍ଷ ବିତିଗଲାଣି, ମୋ ବୋଉ ଆଉ ମଣି ଆଈ ସୁଜା ଅଜା ନଥିଲା ସମୟରେ ପ୍ରାୟ ଏକାଠି ସମୟ କଟାନ୍ତି । ବୋଉର କିନ୍ତୁ ମନକଷ୍ଟ । ତାର ଏତେ ପରିଶ୍ରମ ସତ୍ତ୍ୱେ ମଣିଆଈ ଆଜିଯାଏ ବର୍ଣ୍ଣବୋଧ ଧରି ନାହିଁ । ସେ ତା ନିଜ ପଢ଼ାକୁ ହେଳାକରି ଖୁଡ଼ୀ ପିଛା ଲାଗେ । ସୁଜା ଅଜା ଆଖିରେ ପଡ଼ିଲେ ସେ ହସି ହସି ଗଡ଼ିଯାଏ । କହେ ସୁଧା ତା ପଛରେ କାହିଁକି ଲାଗିଛୁ ? ତାର ପଢ଼ାପଢ଼ି ହବ ନାହିଁ । ମଣିଆଈ ରାଗରେ ମୁହଁ ଫୁଲାଏ ।

ଅନେକ ଥର ସୁଜା ଅଜାର ଆଖଡ଼ା ପିଲାଏ ଘରକୁ ଆସି ତାକୁ ଖୋଜନ୍ତି । ଗେହ୍ଲା ଆଈ ତାଙ୍କୁ ଦେଖିଲେ ମନେ ମନେ ବିରକ୍ତ ହୁଏ । କହେ ସେତ ପୋଷ୍ଟ ଅଫିସ୍‌ରେ ଥିବ । ଦିନବେଳା କ'ଣ ସେ ଘରେ ଥାଏ ? ସଂଧ୍ୟାରେ ଆସ । ସୁଜା ଅଜାକୁ ପଚାରିଲେ କହେ ଗୋଟେ ନୂଆ ଡ୍ରାମା ପାଇଁ ସମୟ ଦେଇ ପାରିବ କି ନାହିଁ ବୁଝିବାକୁ ଆସୁଛନ୍ତି । ତୁ ବ୍ୟସ୍ତ ହ ନା ମୁଁ ଆଜି ଆଖଡ଼ାକୁ ଗଲେ ସବୁ ଠିକ୍ କରି ଆସିବି । ଗେହ୍ଲି ମାଉସୀ କିନ୍ତୁ ସନ୍ଦେହରେ ରହେ । ଏ ଘଟଣାର ଦୁଇ ତିନିମାସ ପରେ ଦିନେ ରାତିରେ ଉଠିଲା ବେଳକୁ ଗେହ୍ଲା ମାଉସୀ ଦେଖିଲା ସୁଜା ଘରେ ଲଣ୍ଠନ ଜଳୁଛି । ଝରକା ଫାଙ୍କରେ ଦେଖିଲା ମଣି ଖଟରେ ନିଘୋଡ଼ ନିଦରେ ଶୋଇଛି । ସୁଜା ତଳେ ବସି କ'ଣ ଲେଖୁଛି । ଭାବିଲା ତା ଯାତରା ପାଟି ଲେଖୁଛି ବୋଧେ । ସରିଲେ ଲଣ୍ଠନ ଲିଭେଇ ଶୋଇବ, ସେ ତରତର ହୋଇ ପରିଶ୍ରା କାମ ସାରି ତା ଘରେ ଯାଇ ଶୋଇ ପଡ଼ିଲା । ତାର ସଂକୋଚ ହେଲା ଝରକା ଫାଙ୍କରେ ସୁଜା କାଳେ ତାକୁ ଦେଖି ଦବ ।

ପରଦିନ ଗେହ୍ଲା ମାଉସୀ ସବୁଦିନ ପରି ବଡ଼ିଭୋର ଉଠି ତା ନିତ୍ୟକର୍ମ ସାରିଲା । ଅଗଣାରେ ସେ ଲଗାଇଥିବା ଶାଗ ଗଛ, ଲଙ୍କା ଗଛରେ ପାଣି ଦେଲା । ତା ପରେ ଘର କାମ ଆରମ୍ଭ କଲା । ମୋ ଆଈ ସମସ୍ତଙ୍କଠୁ ଆଗ ଉଠି ନଈକୁ ଗାଧୁଆ ପାଧୁଆ ସାରି ଗରାଏ ପାଣିଧରି ଆସେ, ସକାଳୁ ସକାଳୁ ନଗଲେ ମର୍ଦ୍ଦଲୋକ ପହଞ୍ଚିଯାନ୍ତି । ମଣି ଆଈ ଓ ବୋଉ ସେଥିପାଇଁ ନଈକୁ ଯାନ୍ତି ନାହିଁ । ଘରେ କୂଅପାଣିରେ ଗାଧାନ୍ତି । ମୋ ଆଈ ଗରାଧୋଇ ତା ଓଦା ଲୁଗା ସୁଖାଉଛି ଦେଖିଲା ସୁଜା ତା ଘରୁ ବାହାରି ତରତର ହେଇ କୁଆଡ଼େ ବାହାରି ଯାଉଛି । ତାକୁ ଦେଖି ଆଈ ପଚାରିଲା - ଏତେ ସକାଳୁ କୁଆଡ଼େ ବାହାରିଲ ସୁଜା । ରୁହ ମୁଁ ଗାଧୋଇ ଆସିଲାଣି । ତମେ ଦାନ୍ତପତ୍ର ଘସ । ମୁଁ ଚାହା କରି ଦଉଛି ପିଇ ଯିବ । ନାଁ ଥାଉ ନୂଆବୋଉ ମୋର ଟେଣେ ଜରୁରୀ କାମ ଅଛି । ଡ଼ାକ ଘର ଖୋଲିବି । ଦଶଟାରେ ଦାରୋଗା ତଦାରଖରେ ଆସିବ । ଭାଇ ଆଜି ଆସିବାର ଅଛିକି ? ମୋର ଆଉ ଦେଖା ହବନି ବୋଧେ । ଆଈ କହିଲା - ମୁଁ ତ ଜାଣେନି । ଅପାଙ୍କୁ ପଚାର କହିପାରିବେ । ଥାଉ ଦରକାର ନାହିଁ କହି ସେ ବାହାରି ଗଲେ ।





ମୋ ବୋଉ ଓ ମଣିଆଈ ଦଶଟା ସରିକି ଗାଧାନ୍ତି । ଗେହ୍ଲା ମାଉସୀ ସବୁ କାମରେ ଆସି ଦୁହିଁଙ୍କ ମୁଣ୍ଡ କୁଣ୍ଡାଇ ଦିଏ । ସେଇ କାମଟି ତାକୁ ବହୁତ ବେଳ ଲାଗେ । ମୋ ବୋଉ ଓ ମଣିଆଈ ସେ ଦୁହିଁଙ୍କୁ ନଈକୁ ଗାଧୋଇ ଯିବାକୁ ଛାଡ଼େ ନାହିଁ । ସେମାନେ କୂଅମୂଳେ ଗାଧାନ୍ତି । ମାଗୁଣିଆ କୂଅରୁ ପାଣିକାଢ଼ି କୁଣ୍ଡରେ ଭରିଦିଏ । ବଡ଼ିଲା ଝିଅ ବୋହୂ, ନଈରେ ଖୋଲା ମେଳାରେ ଗାଧୋଇବା ଉଚିତ ନୁହଁ । ସେ ଦିନ ସବୁକାମ ସାରି ଚିରୁଣୀ ଧରି ଗେହ୍ଲା ମାଉସି ମଣିକୁ ଭାବିଲା ଗେହ୍ଲି ମାଉସି ତା ମହୁଫେଣା ପରି ଚୂଳକୁ ଖୋଲିଦେଲା । ଡ଼ାକିଲା ତା ଭିତରୁ ଫର୍ଦ୍ଦେ ଛୋଟ କାଗଜ ଖସି ପଡ଼ିଲା କିନ୍ତୁ ସେ କାଗଜ ପ୍ରତି କାହାରି ଲକ୍ଷ୍ୟ ନଥିଲା । ମଣି ଆଈର ମୁଣ୍ଡ କୁଣ୍ଡାଇବାକୁ ତାକୁ ପ୍ରାୟ ଅଧ ଘଣ୍ଟାଏ ଲାଗେ । ତା କାମ ସାରି ଆଈକୁ ଡ଼ାକିଲା । ଆଈର ଚୁଟି କିନ୍ତୁ ମଣି ଆଈ ପରି ନୁହଁ । ଦୁହିଁଙ୍କ ମୁଣ୍ଡ କୁଣ୍ଡା ସରିଲା ପରେ ତଳେ ଝଡ଼ିଲା ଚୂଳସବୁ ଗୋଟାଇ ଛେପ ନେଡ଼ୁଆ ପକାଇଲା ବେଳେ କାଗଜ ଖଣ୍ଡେ ତା ଆଖିରେ ପଡ଼ିଲା । ତଳୁ ଗୋଟାଇ ନେଇ ଏପଟ ସେପଟ କରି ଡ଼ାକିଲା, ଆଲୋମଣି, ଦେଖିଲୁ ଏଇଟା କ'ଣ ? ଏଇଠି କୋଉଠି ପଡ଼ିଥିଲା । ମଣି ସେ କାଗଜ ଖଣ୍ଡକ ଏପଟ ସେପଟ କଲା ସତ କିନ୍ତୁ କିଛି ପଢ଼ି ପାରିଲା ନାହିଁ କି ବୁଝି ପାରିଲା ନାହିଁ । ମୋ ଆଈ ଅଳ୍ପ ଦୂରରେ ଠିଆ ହେଇ ଦର୍ପଣରେ ତା ଖୋସା ଦେଖୁଥିଲା । ମଣିଆଈ କାଗଜ ଖଣ୍ଡ ତା ହାତକୁ ଦେଲା । ବୋଉ ସେ କାଗଜଟିକୁ ଭାଙ୍ଗି ଖୋଲିସାରି ପଢ଼ିବା ପରେ ପରେ ଗଛ କାଟିଲା ପରି ତଳେ ପଡ଼ିଗଲା । ମୋ ଆଈ ଓ ଗେହ୍ଲା ମାଉସୀ ଦଉଡ଼ି ଆସିଲେ । ମୋ ଛୁଆର କ'ଣ ହେଲାଲୋ କହି ଗେହ୍ଲା ମାଉସୀ ଢ଼ାଳେ ପାଣି ଆଣି ତା ମୁହଁ ଓ ମୁଣ୍ଡରେ ଢ଼ାଳି ଦେଲା । ଆଉ କିନ୍ତୁ ସେ କାଗଜ ଖଣ୍ଡିକ ମୁଠାଇ ଧରିଥାଏ । ଚେତା ଫେରିବା ପରେ ବି ସେ ବିଡ଼ି ବିଡ଼ି ହେଇ କ'ଣ କହୁଥାଏ । କିଛି ବୁଝା ପଡୁନଥାଏ କେବଳ ସୁଜା ଦାଦା – ଦାଦା ଛଡ଼ା, କେହି କିଛି ବୁଝି ପାରୁନଥାନ୍ତି ।



ତା ପର ଘଟଣା ଅତି ସଂକ୍ଷିପ୍ତ । ବାହାରେ ଗୁଡ଼ାଏ ଲୋକଙ୍କ ପାଟିଗୋଳ ଶୁଣି ଗେହ୍ଲା ମାଉସୀ ଦାଣ୍ଡକୁ ଦଉଡ଼ିଗଲା । ଟେକା ଟେକି କରି ଗାଁ ଲୋକ ସୁଜାର ମୃତ ଦେହ ଆଣି ପିଣ୍ଡାରେ ସୁଆଇ ଦେଲେ । ଗାଁ ଲୋକଙ୍କ ସହିତ ପଛରେ ଥାନା ବାବୁ । ଅଜାଙ୍କ ପାଖକୁ ଖବର କିଏ ଦେଲା କେଜାଣି ଘଣ୍ଟାଏ ଦୁଇଘଣ୍ଟା ଭିତରେ ସେ ଆସି ପହଞ୍ଚିଥିଲେ । ଗାଁ ର ସେ ଅତି ପ୍ରିୟ ଲୋକ । ଥାନା ବାବୁଙ୍କର ମଧ୍ୟ ବେଶ୍ ଜଣାଶୁଣା । ତଥାପି ନାନା ପ୍ରକାର ଝାମେଲା ସାରି ଦିନ ତିନିଟା ଶବଦାହ ପାଇଁ ଛାଡ଼ିଲେ । ଯାହା ଜଣା ପଡ଼ିଲା ଦିନ ସାତଟାରୁ ଆଠଟା ଭିତରେ ସେ ଆତ୍ମହତ୍ୟା କରିଛି । କାହିଁକି କ'ଣ ପାଇଁ କଲା ସେଟା ରହସ୍ୟ ଘେରରେ ରହିଯାଉଥାନ୍ତା । କିନ୍ତୁ ସବୁ କାମ ସରିବା ପରେ ମୋ ବୋଉ ସେ ଚିଠି ଖଣ୍ଡିକ ଅଜାଙ୍କୁ ଦେଖାଉଥିଲା ଲେଖା ଅଛି -

ମଣି -

ଆଜି ଆମର ଶେଷ ଦେଖା, ଭାଇକୁ ସାମନା କରିବାର ସାହସ ମୋର ନାହିଁ । ଆଖଡ଼ା ଘର ବନ୍ଧୁମାନେ ଟଙ୍କା ପାଇଁ ଅଧିକାଂଶ ସମୟ ମୋ ପାଖରେ ଆସି ପହଞ୍ଚନ୍ତି । ସବୁଦିନ ମୋ ପାଖରେ ଟଙ୍କା ନଥାଏ, ସେ ସବୁ ଖର୍ଚ୍ଚ ପାଇଁ ମୁଁ ମଧ କିଛି ଅଂଶରେ ଦାୟୀ । ଡ଼ାକଘର ଟଙ୍କାରୁ ପାଞ୍ଚପଚିଶ ନେଇ ହଜାରେ ଉପରେ ହେଇଗଲା । ମୁଁ ଲୋକଙ୍କ ମନିଅର୍ଡ଼ର ଟଙ୍କା ଆଉ କେତେଦିନ ଲୁଚେଇ ରଖିବି ? କାଲି ଶୁଣିଲି ଆଜି ଦି ପହରରେ ଥାନାରୁ ଅଡ଼ିଟ୍ କରି ଆସିବେ । ଏ ବାଟ ଛଡ଼ା ମୋର ଆଉ କିଛି ଉପାୟ ନଥିଲା । ଭାଇଙ୍କ ସାମନା ହବାକୁ ମୋର ସାହାସ ନାହିଁ । ଏ ଚିଠି ଖଣ୍ଡ ତୋ ଖୋସାରେ ଗୁଂଜି ଦଉଛି । ମୋ କାମ ସରିବା ଆଗରୁ ବିଛଣାରେ ରଖିଲେ କାଳେ କାହା ହାତରେ ପଡ଼ିଯିବ, ମତେ କ୍ଷମା କରିବୁ ଓ ସୁଧାକୁ ଭଲହିଁ ଜୀବନ କଟାଇବୁ ।

ଇତି ତୋର ସୁଜା

ଚିଠି ପଢ଼ିସାରି ଅଜା କେବଳ ଏତିକି କହିଲେ - ହତଭାଗ୍ୟ ମତେ ଟିକେହେଲେ ଜଣାଇଥାନ୍ତା । ତା ପରଠୁ ମୋ ଅଜା କେବେ ଆଉ ତାଙ୍କ ଘରକୁ ଯାନ୍ତି ନାହିଁ । ମରିବା ଯାଏ ସେଇ ଭଦ୍ରକରେ କଟାଇଛନ୍ତି । ଶୋଳ ସତର ବର୍ଷର ଝିଅଟିର ସାମନା କରିବାକୁ ତାଙ୍କର ସାହାସ ନଥିଲା ।

ଆଉ ମଣି ଆଇ, ତାକୁ ମୁଁ ଦେଖିଛି, ତାର ସେଇ ମହୁଫେଣା ପରି ଚୁଟୀକୁ ନିଜେ ନିଜେ କାଟି ଲାଣ୍ଡି ହେଇପଡ଼ିଥିଲା । ଗେରୁଆ ରଙ୍ଗର ଖଣ୍ଡେ ଶାଢ଼ୀ ପିନ୍ଧେ । ଅଲେଖ ଧର୍ମ ନେଇ ଦିନ ସାରା ଥରେ ଖାଇ ଠାକୁରଙ୍କ ପାଖରେ ଅନେକ ସମୟ ବସେ । ମନକୁ ମନ ବିଡ଼ି ବିଡ଼ି ହେଇ କ'ଣ କହେ ମୁଁ ବୁଝି ପାରେନି । ପରେ ଶୁଣିଛି ସେଇ ଠାକୁରଙ୍କ ପାଖରେ ତାର ଶେଷ ଜୀବନ କଟିଥିଲା ।



# ହଜିଲା ସ୍ମୃତି

ସକାଳୁ ନିତ୍ୟ କର୍ମସାରି ଛହା କପ୍‌ଟା ଧରି ବସିଛି ମୋ ସାନ ଭଉଣୀ ମିଲି ଫୋନ୍ କଲା, କହିଲା ଅପା ଆଜିର ସମ୍ବାଦ ଦେଖିଲୁଣି । ମୁଁ ପଚ୍ଚରିଲି ନାଁ କ'ଣ ବାହାରିଛି କି ? ବଙ୍ଗଳା ସିନେମା କେଉଁଠି ପଡ଼ିଛିକି ? ବହୁତ ଦିନ ହେଲା ଗୋଟେ ବଙ୍ଗଳା ସିନେମା ଦେଖି ନାହାଁନ୍ତି ସତରେ । କହିଲା - ତୁ ପଢ଼ ଜାଣିବୁ ।

ଆଜିକାଲି ଆଉ ସକାଳୁ ମୁଁ କାଗଜ ପଢ଼େ ନାହିଁ । ଦିନଥିଲା ସକାଳୁ ଛହା କପ୍‌ଟି ଧରିଲେ କାଗଜ ଖୋଜା ପଡ଼େ । ଏବେ କିନ୍ତୁ ବୟସ ହେଲାଣି, ସକାଳୁ କାଗଜ ଖୋଲିଲେ ଚୋରି, ଡ଼କାୟତି, ବୋହୂପୋଡ଼ି ଧର୍ଷଣରେ କାଗଜ ପୁରିଥାଏ । ମନଟା ପୁରାପୁରି ବିଷାକ୍ତ ହେଇଯାଏ । ସିନେମା କହିଲେ କେବଳ ହିନ୍ଦୀ ନଚେତ୍ ହିନ୍ଦି ସିନେମାରୁ କପି କିଛି ଓଡ଼ିଆ, ବିରକ୍ତ ଲାଗେ, ଦଶବର୍ଷ ତଳେ ସପ୍ତାହରେ ତିନିଦିନ ବଙ୍ଗଳା ମାଟିନ୍ ଚ୍ଚଲୁଥିଲା । ମିଲି ମୁଁ ସବୁ ବଙ୍ଗଳା ସିନେମା ଯିବାକୁ ପ୍ରୋଗ୍ରାମ୍ କରୁ । ମାର୍ଟିନ୍ ସୋ ମଧ୍ୟ ସୁବିଧା ସମୟ ଆମ ପାଇଁ । ତେଣୁ ସକାଳ କାଗଜ ପଢ଼ିବା ମୁଁ ପୁରାପୁରି ବନ୍ଦ କରି ଦେଇଛି । ମିଲି କହିଲା ପରେ ମୁଁ ଭାବିଲି କାମଦାମ ସବୁ ଦେଖିବି । କାମ ସରିବାମାନେ ଦିନ ବାରଟା । ରନ୍ଧାରନ୍ଧିର ଦାୟିତ୍ୱ ନାହିଁ ସତ, କିନ୍ତୁ ପିଲାମାନେ ଜଳଖିଆ ପତ୍ର ଖାଇ ସ୍କୁଲ କଲେଜ ଯିବେ, ତା ପରେ ଅଛି ଗାଧୁଆ ଠାକୁର ପୂଜା, ସେ ସବୁ ମାରି ନିଜେ ଓ ବାବୁଙ୍କୁ ଜଳଖିଆ ଦେଇ ସାରିବା ବେଳକୁ ରୋଷେୟା ପଚ୍ଚରିବ - ମାଆ କ'ଣ ତରକାରୀ ହବ ? ମତେ କିନ୍ତୁ ସେଇ କଥାଟା ଶୁଣିବାକୁ ବଡ଼ ବିରକ୍ତ ଲାଗେ । ଦଶବର୍ଷ ହେଲା ସେ ଆମ ପାଖରେ ଅଛି । କିନ୍ତୁ ମନକୁ କିଛି କରି ପାରେନି । କରିବ କେମିତି । ପୁଅ ଝିଅଙ୍କଠୁ ଆରମ୍ଭ କରି ବାପ ଯାଏ ପ୍ରକାର ପ୍ରକାର ବରାଦି । ପିଲା ତିନିଙ୍କର ତିନି ପ୍ରକାର ହେଲେ ବାବୁ ଆଉ ପ୍ରକାରେ କହିବେ । ତେଣୁ ତରକାରୀ କଥା ପଡ଼ିଲେ ବିରକ୍ତ ଲାଗେ ।

ସେ ଯାହାହଉ ତାରି, ଭିତରେ କାମ ସାରି ମୁଁ ସମ୍ବାଦଟା ଧରିଲି । ପ୍ରଥମ ଗୋଟେ ଦୁଇଟା ପୃଷ୍ଠା ଆଡ଼େଇ ଗଲା ପରେ ଚତୁର୍ଥ ପୃଷ୍ଠାରେ ଦେଖିଲି ଜଣେ ଭଦ୍ରଲୋକଙ୍କ ପାଶ୍ ପୋର୍ଟ



ସାଇଜ ଫଟୋ ତଳେ ଲେଖା ଅଛି - ବିକ୍ରମ ମଲ୍ଲିକଙ୍କ ଅକାଳ ବିୟୋଗ । ସୁରାଶକ୍ତ ଅବସ୍ଥାରେ ଗାଡ଼ି ଚଳାଇ ....... ଇତ୍ୟାଦି - ତା ପରପୃଷ୍ଠାରେ ବଙ୍ଗଳା ସିନେମା ଖବର କିଛି ବାହାରିଥିବ ବୋଲି ଖୋଜିଲି କିନ୍ତୁ ତା ବି ନାହିଁ । ଆଉ ମିଲି ତା ହେଲେ କି ଇନ୍‌ଟେରଷ୍ଟିଙ୍ଗ୍ ଖବର ଶୁଣାଇବାକୁ ଫୋନ କରିଥିଲା ମୁଁ କିଛିବି ବୁଝିପାରିଲିନି । ଭାବୁଥିଲି ତାକୁ ପଚାରିବି ପୁଣି ଭାବିଲି ସେ ପୁଣି କହିବ ନାହିଁ କି ?

ତା ପରେ ମୁଁ ପୁରାପୁରି ସେ କଥା ଭୁଲି ଯାଇଥିଲି । ସଂଧ୍ୟାରେ ମିଲି ଫୋନ କଲା, ପଚାରିଲା ଅପା ପଢ଼ିଲୁ ? ହଁ ପଢ଼ିଲି କିନ୍ତୁ ସ୍ପେସିୟାଲ୍ ଖବର ତ ସେମିତି କିଛି ନାହିଁ । ତୁ ମତେ କ'ଣ ପଢ଼ିବାକୁ କହୁଥିଲୁ ? ମିଲି ହସିଲା - କହିଲା - ତୁ କ'ଣ ସତରେ ଏତେ ବୁଢ଼ି ହେଇଗଲୁଣି ? ଆମ ପିଲାଦିନ କଥା ସ୍କୁଲ ଯିବା କଥା ସବୁ ଭୁଲି ଗଲୁଣି । ସେ ବିକ୍ରମ ମଲ୍ଲିକ ତତେ କି ହଇରାଣରେ ପକାଉଥିଲା ତୁ ସବୁ ଭୁଲି ଗଲୁଣି ବୋଧେ ? ଆଜି କାଗଜରେ ତା ଫଟୋ ଓ ଦେହାନ୍ତ କଥା ଦେଖି ମନେ ପଡ଼ିଗଲା । ହସ ମାଡ଼ିଲା ଯେତିକି ଦୁଃଖ ଲାଗିଲା ସେତିକି । ଟୋକାଟା କି ସୁନ୍ଦର ଥିଲା କହିଲୁ । ମୋ ଭଣଜା ସାଙ୍ଗେ ସେ ଏକାଠି କେଉଁଠି ଗୋଟେ ତହସିଲଦାର କାମ କରୁଥିଲା । ସେ ସମୟରୁ ବହୁତ ପିଆପିଇ କରେ ଶୁଣିଥିଲି । ହଉ ଛାଡ଼ ସେ କଥା, ଅନେକ ଦିନ ହେଲା ଭାଇଙ୍କ ସହିତ ଦେଖା ହେଇନି, ଆମେ ବି କଲେଜ କାମରେ ବ୍ୟସ୍ତ ରହିଗଲୁ, ଏଇ ରବିବାର ଦୁହେ ଆସ । କହିବୁ ତାଙ୍କୁ କହି, ମିଲି ଫୋନ୍ ରଖିଲା ।

ମିଲି ଏବେବି ସେମିତି ହସି ଖୁସି ବୁଲବୁଲି ଅଛି । କେଉଁକାଳର ପୁରୁଣା କଥାକୁ ମନେ ରଖି ଫୋନ୍ କରିଛି । ଧନ୍ୟ କହିବ ତାକୁ । ତାର ସେ କଥାରୁ ମୋର ମନେ ପଡ଼ିଗଲା ଆମ ସ୍କୁଲ ଦିନର ଆଉ ବିକ୍ରମ ମଲ୍ଲିକ କଥା । ମୁଁ ପୁରାପୁରି ଭୂଲି ଯାଉଥିଲି - ପ୍ରକୃତରେ ଭୂଲି ନଥିଲି, କିନ୍ତୁ ମନେ ପକାଇବାକୁ ସମୟ କାହିଁ । ବାହାହେଇ ଆସିବା ପରେ ବିମଳ ସହିତ ଗପସପ ଭିତରେ କିଛି କହିଥିବି ଅବଶ୍ୟ କିନ୍ତୁ ପାଞ୍ଚସାତ ବର୍ଷ ଭିତରେ ତିନୋଟି ପିଲାର ମାଆ ହେଇ ଆଉ ପଛ କଥା କିଛି ଭାବିବାକୁ ବେଳ ନାହିଁ । ଆମ ସ୍କୁଲ ଜୀବନ ପ୍ରାୟ ପଚିଶ ବର୍ଷ ପୁରୁଣା କିନ୍ତୁ ମନେ ପଡ଼ିଯିବାରୁ କାଲିପରି ଲାଗୁଛି । ମିଲି ମୋର ଦୁଇ ବର୍ଷ ସାନ, ମୋ ତଳ କ୍ଲାସରେ ପଢୁଥାଏ । ବାପା ଘରଭଡ଼ା ନେଇଥାନ୍ତି କଟକ ବସ୍ତି ପାଖରେ ଗୋଟେ ଖ୍ରୀଷ୍ଟିୟାନ ସାହିରେ । ଦୁଇ ଭଉଣୀ ଆଡ଼୍‌ମିଶନ ନେଇଥାଉ ଆମ ଘରଠାରୁ ମାଇଲ୍ ଦେଢ଼ ମାଇଲ୍ ଦୂର ବ୍ୟାପ୍‌ଟିଷ୍ଟ ମିଶନ ଗାର୍ଲ ସ୍କୁଲରେ । ମୋର ନବମ, ମିଲିର ଅଷ୍ଟମ । ଦୁଇ ଭଉଣୀ ଚାଲି ଚାଲି ସ୍କୁଲକୁ ଯାଉଁ । ଆମ ସାଇର କେତେ ଝିଅ ଆମ ସାଙ୍ଗରେ ମିଶନ୍ତି । ଗପସପ ଭିତରେ ବାଟ ଜଣା ପଡ଼େ ନାହିଁ । ସେ ସମୟରେ କିଏ ବା ରିକ୍ସା କିମ୍ବା ସାଇକେଲ୍‌ରେ ଯାଉଥିଲା । ଆମ ସ୍କୁଲ ପାଖାପାଖି କ୍ରାଇଷ୍ଟ କଲେଜ । ରାସ୍ତା କଡ଼ରେ ଠିକ୍ କଲେଜ ସାମନାରେ କଲେଜର ହଷ୍ଟେଲ । ହଷ୍ଟେଲ ରୁମ୍‌ର



ଝରକା ସବୁ ରାସ୍ତା ଆଡ଼କୁ ମେଲା । ଆମକୁ ସବୁ ରାସ୍ତା ଉପରୁ କଲେଜ ପିଲାଙ୍କ ଚଲାବୁଲା ଛିଅର ହବା ଲୁଗା ପଟା ଟଙ୍ଗା । ହେଉଥିବାର ସବୁ ଦିଶେ । ଆମ ଅଜଣାରେବି ଆଖି ପଡ଼ିଯାଏ ଅନେକ ସମୟରେ ।

ସେ ଟୋକାମାନଙ୍କର ତ ଉତ୍ପାତ କହିଲେ ନ ସରେ । ଆମେ ସବୁ ଠିକ୍ ହଷ୍ଟେଲ ସାମନାସମାନି ହେଲାମାତ୍ରେ ବନ୍ଦ ଝରକା ସବୁ ଫଟାଫଟ ଖୋଲିଯାଏ । ସେଇ ଝରକା ପଛପଟୁ ଆମକୁ ଦେଖିବାର ଆଗ୍ରହ । ବନ୍ଦ ଥିଲେ ଫଟାଫଟ ସବୁ ଝରକା ଖୋଲିଯାଏ । ଝରକା ପଛପଟୁ ତିନିଚାରି ମୁଣ୍ଡ ଦିଶେ । କେଜାଣି କେମିତି ଆମ ଭିତରୁ କିଛି ଝିଅଙ୍କ ନାଁ ସେମାନେ ଜାଣି ଯାଇଥାନ୍ତି । ବିଶେଷତଃ ମୋ ନାଁ ଟା । ମନ ନଥିଲେ ବି ବେଳେବେଳେ ମୋ ଆଖି ପଡ଼ିଯାଏ । ତାଙ୍କ ତତ୍ପରତା ଦେଖି ହସ ମାଡ଼େ । ଯେମିତିକି ଝରକା ଶୀଘ୍ର ନ ଖୋଲିଲେ ସବୁ ଦୃଶ୍ୟ ଅଦୃଶ୍ୟ ହେଇଯିବ । ମିଲି ଦେଖିଲେ ସେମାନଙ୍କୁ ରାଗିଯାଇ ଖତେଇ ହୁଏ । ଗୋଡ଼ରୁ ଚଟି କାଢ଼ି ତାଙ୍କୁ ଦେଖାଏ । ଗାଳି ଦିଏ, ମୁଁ ତାକୁ ଜୋର କରି ଟାଣି ଆଣେ । ମତେ ଡ଼ରମାଡ଼େ । କିଏ କାଳେ ପାଖକୁ ଆସି ଧରି ପକାଇବ । ସତକୁ ସତ ଥରେ ଗୋଟେ ଟୋକା ଆସି ମିଲି ହାତରୁ ଛତା ଛଡ଼ାଇ ନେଇଥିଲା । କିଛି ସମୟ ପରେ ଅବଶ୍ୟ ପୁଣି ଆଣି ରାସ୍ତାରେ ପକାଇଗଲା ।

ହଷ୍ଟେଲ ପାରି ହବା ପରେ ମୁଁ ମିଲିକୁ ଗାଳିଦିଏ । କହେ ଆମେ ରାସ୍ତାରେ ଯାଉଛନ୍ତି ଯିବା, ସେମାନେ ପାଟିତୁଣ୍ଡ କରୁଛନ୍ତି କରନ୍ତୁ । ଆମର କ'ଣ ଯାଏ ଆସେ । ତୁ ତାଙ୍କୁ ଚାହୁଁଛୁ କାହିଁକି ପୁଣି ରାଗୁଛୁ କାହିଁକି ? ତୁ ଚିଡୁଛୁ ବୋଲି ତତେ ଚିଡ଼ାଉଛନ୍ତି । ତୁ ମୋଟେ ତାଙ୍କ ଆଡ଼କୁ ଚାହିଁବୁ ନାହିଁ । ମନେ ରହିଲା ? ମିଲି କିନ୍ତୁ ଶୁଣିବାକୁ ନାରାଜ । ପିଲାଦିନୁ ଚଗଲି, ତାକୁ ଯାହା କରିବାକୁ ମନା କରିବ ସେ ସେୟା କରିବ । ତେଣୁ ତାକୁ କିଛି କହିବା ବୃଥା ।

ଆମ ଘର ସାମନାରେ ଗୋଟେ ବିରାଟ ବାଲିଗଦା ଥାଏ । ଆମେ ଦୁଇ ଭଉଣୀ ସ୍କୁଲରୁ ଫେରି ଜଳଖିଆ ଖାଇସାରି ସେଇ ବାଲିଗଦା ଉପରେ ବସି ଗପ କରୁ । ଅନ୍ୟ ଭାଇ ଭଉଣୀ ସବୁ ସାନ ସାନ । ମିଲି ତାଙ୍କୁ ସବୁ ପାଖ ମଡ଼େଇ ଦିଏ ନାହିଁ । ବାଲିକୁଦାକୁ ଅଳ୍ପ ଛାଡ଼ି ଗୋଟେ ବଡ଼ ପିଜୁଳି ଗଛ । ମିଲି କୁଦ ଉପରୁ ଡ଼ିଆଁ ମାରି ପିଜୁଳି ପାରେ, ଦୁହେଁ ବସି ଖାଉ । ତା ଭିତରେ ମିଲି ତା ସ୍କୁଲ ସାଙ୍ଗ ମାନଙ୍କ କଥା, ଟିଚର ମାନଙ୍କ କଥା କହି ହସି ହସି ଗଡ଼ିଯାଏ । ନକଲ କରିବାରେ ସେ ଉସ୍ତାଦ । ଦିନେ ମତେ କହିଲା - ଅପା ଗୋଟେ କଥା ଜାଣିଛୁ ? ମୁଁ ପଚାରିଲି କି କଥା କହିଲୁ ? କହିଲା ରାଗିବୁ ନାହିଁ ତ ? - ନାଁ କହ । ମୋ ସାଙ୍ଗ ରୁଚି ନୁହଁ, ତା ବଡ଼ ଭାଇ ଖ୍ରାଏଷ୍ଟ କଲେଜରେ ପଢୁଛି । ସେ କହୁଥିଲା ସେ ବଜାରୀ ହଷ୍ଟେଲ ପିଲା ଗୁଡ଼ାକ ତୋ ନାଁ ଜାଣନ୍ତି । ଆହୁରି କହିଲା ତୋ ନାଁ ଦେଇଛନ୍ତି "ରୋଡ଼୍ କୁଇନ୍" । ସେ ରାସ୍ତାରେ ଯେତେ ଝିଅ ଯାନ୍ତି ସମସ୍ତଙ୍କଠୁ ତୁ କୁଆଡ଼େ ସୁନ୍ଦର । ମୁଁ ମିଲି ପିଠିରେ ଗପୁଡ଼ାଏ ଦେଇ କହିଲି - ତୁ ଏଇ ସବୁ କଥା ତାହାଲେ ତା ଭାଇ ସାଙ୍ଗରେ ଗପୁଛୁ, ବୋଉକୁ କହିବି ? ସେ ମତେ ଆଖିବ



ଦେଖେଇ କହିଲା - ବାହାରେ ମୁଁ କାହିଁକି ତା ସାଙ୍ଗରେ ଗପିବି ? ଗୁଲି ତା ଭାଇଠୁ ଶୁଣି ମତେ କହୁଥିଲା ନା ? ସେଇ କଲେଜରେ ସେ ପଢୁଛିତ ? ଶୁଣିଥିବ ସେଇ ଟୋକାଙ୍କଠୁ ସବୁ । ଗୁଲି ମତେ କହୁଥିଲା ସତରେ ମିଲି ତୋ ଭୂଲି ଅପା କେଡେ ସୁନ୍ଦର ।

ମୁଁ ନହସି ରହିପାରିଲି ନାହିଁ । ନିଜ ରୂପର ପ୍ରଶଂସା ଶୁଣିଲେ କିଏ ବା ଖୁସି ନହବ ? ଘରେ ବାହାରେ ସମସ୍ତେ ମତେ ସୁନ୍ଦର କହନ୍ତି । ବୋଉ ମୋ ମୁଣ୍ଡ ବାନ୍ଧି ଦେଇ ମୋ ଛୁଟିକୁ କିଏ ଖୁଣିବ ବୋଲି ଛେପ ଟିକେ ପକାଇ ଦିଏ । ବୟସ ଅଳ୍ପ, ସ୍କୁଲ ବାହାରିବା ବେଳେ ପାଉଡ଼ର କୁଙ୍କୁମ କଜଳ ଲଗାଇ ଭଲ ଶାଢ଼ୀ ଖଣ୍ଡେ ପିନ୍ଧି ବାହାରିଲେ ସୁନ୍ଦର ଝିଅଟିଏ ବୋଲି ସମସ୍ତେ କହନ୍ତି । ମିଲି ଫ୍ରକ୍ ପିନ୍ଧେ । ସ୍କୁଲ ସାଙ୍ଗମାନେ ମଧ୍ୟ ମୋ ରୂପର ପ୍ରଶଂସା କରନ୍ତି । ଗୁଲି ଭାଇ ମୁହଁରୁ ଶୁଣି ପ୍ରକୃତରେ ମୁଁ ମନେମନେ ଖୁସି ହେଇଥିଲି ।

ଏଇ ଭିତରେ ଗୋଟେ ବର୍ଷ କଟିଗଲା, ମୋର ଦଶମ ମିଲିର ନବମ ବର୍ଷ । ସେଇ ବର୍ଷ ଆମେ ରାଷ୍ଟ୍ରଭାଷା ଅଫିସକୁ ଯାଇ ହିନ୍ଦୀ ଶିକ୍ଷା ନେଲୁ । ଆମ ସ୍କୁଲରେ ହିନ୍ଦୀଶିକ୍ଷା ପରିୟଡ୍ ଗୋଟେ ହେଲା, ଖାଲି ହିନ୍ଦୀ ନୁହଁ ତା ସହିତ ସୂତା କଟା ମଧ୍ୟ ଶିଖାଇଲେ । ସାର୍ କହିଲେ ଯିଏ ଅଧିକ ପଢ଼ିବାକୁ ଋହିଁବ ସେ ରାଷ୍ଟ୍ରଭାଷା ଅଫିସରେ କ୍ଲାସ ଆଟେଣ୍ଡ କରପାରିବ । ସେ ସବୁ କ୍ଲାସ୍ ପାଞ୍ଚଟାରୁ ଛଟା ଯାଏ । ପ୍ରାରମ୍ଭିକ, ପ୍ରବେଶ ପରିଚୟ ପାଶ୍ କଲେ ହିନ୍ଦୀ ଟିଚର ମଧ ହେଇପାରିବ । ଆମେ ଦୁଇ ଭଉଣୀ ହିନ୍ଦି କ୍ଲାସ କରିବାକୁ ଠିକ୍ କଲୁ । ଆମ ସ୍କୁଲ୍ ଠାରୁ ରାଷ୍ଟ୍ରଭାଷା ଅଫିସ ବେଶୀ ବାଟ ନୁହେଁ । ସ୍କୁଲ ଛୁଟୀ ହୁଏ ସାଢ଼େ ଋରିଟାରେ । ତେଣୁ ପାଞ୍ଚଟାରୁ ଛଟା ଯାଏ ଖୁସିରେ ଯାଇ ପଢ଼ାପଢ଼ି କରି ହବ । ହିନ୍ଦୀରେ ପ୍ରଚଳନ ସେତେବେଳେ ନୂଆ ନୂଆ ଆରମ୍ଭ ହେଉଥାଏ । ଆମେ ଦୁହେଁ ବାପାଙ୍କୁ ଜଣାଇଲୁ । ସେ ପରମିଶନ୍ ନ ଦେଲେ କିଛି ହେଇପାରିବନି । ବାପା କିନ୍ତୁ ବିନା ଦ୍ୱିଧାରେ ରାଜି ହେଇଗଲେ । ଝିଅମାନଙ୍କ ପଢ଼ାପଢ଼ି ପ୍ରତି ତାଙ୍କର ବିଶେଷ ଆଗ୍ରହ । ନହେଲେ ସେ ସମୟରେ ସେ ଆମକୁ ସ୍କୁଲ ପଠାଇ ନଥାନ୍ତେ । ମତେ ସେତେବେଳେ ଷୋଳ ବର୍ଷ ମିଳିକୁ ଚଉଦ ବର୍ଷ । କିନ୍ତୁ ତାଙ୍କ ମନରେ କୌଣସି ଦ୍ୱିଧା କିମ୍ବା ସନ୍ଦେହ ନଥାଏ ତାଙ୍କ ପିଲାଙ୍କ ଉପରେ । ସେ ରାଜି ହେଇଗଲେ ।

ସ୍କୁଲ ଛୁଟୀ ପରେ ଆମେ ଦୁଇ ଭଉଣୀ ରାଷ୍ଟ୍ରଭାଷା ଅଫିସ୍ ଯିବା ଆରମ୍ଭ କଲୁ । ଅଫିସ୍‌ରୁ କାମ ସାରି ଫେରିବା ବେଳକୁ ସଂଧ୍ୟା ହେଇଯାଏ । ସ୍କୁଲ ବାଟେ ଆଉ ନ ଫେରି ଆମେ ପଛପଟ କ୍ୟାଣ୍ଟନମେଣ୍ଟ ରୋଡ଼୍‌ର ଗୀର୍ଜା ଆଗ ଦେଇ ଆସି ଚଣ୍ଡୀ ମନ୍ଦିର ଛକରେ ପହଞ୍ଚି ଯାଉଁ । ସେ ରାସ୍ତା ଆମର ଅତି ପରିଚିତ । କ୍ୟାଣ୍ଟନମେଣ୍ଟ ରୋଡ଼ର ଦୁଇପଟେ ବଡ଼ ବଡ଼ ଜାମୁକୋଳି, ବଉଳ, ପଣସ, ଆମ୍ବ ଗଛ ଯୋଗୁଁ ରାସ୍ତାଟା ଟିକେ ଅଂଧାରିଆ । ଛ ଟା ବେଳକୁ ଦିନଥାଏ କିନ୍ତୁ ଗଛ ଗହଳି ପାଇଁ ସାମାନ୍ୟ ଅନ୍ଧାରିଆ ଦିଶେ । ରାସ୍ତାରେ ଆଜିକାଲିପରି ଗହଳ ଚହଳ ନଥିଲା । କେଉଁଠି କେମିତି ଗୋଟେ ଅଧେ ହାତ ଟଣା ରିକ୍ସା ସାଇକେଲ ଚଢ଼ାଳି ଆଖିରେ ପଡ଼ନ୍ତି ।



ଆମେ ଦୁଇ ଭଉଣୀ ହାତଧରାଧରି ହୋଇ ଆଉ ପଛକୁ ନ ଚାହିଁ ଆଗେଇ ଚାଲୁ । ପ୍ରାୟ ଆଠ ଦଶ ଦିନ କଟିଗଲା । କିନ୍ତୁ ତା ପରେ ହଠାତ୍ ଦିନେ ଦେଖିଲି ଆମ ପଛେ ପଛେ ଗୋଟେ ଲୋକ ଚାଲୁଛି । ମୁଁ ପଛକୁ ଚାହିଁଲେ ସେ କିଛି ସମୟ ରହି ଯାଉଛି । ମିଲିକୁ ମୁଁ କିଛି କହିଲି ନାହିଁ । ଜାଣିଲେ ସେ କିଛି ଗୋଟେ ଗଣ୍ଡଗୋଳ କରିବ । ସେ ଲୋକକୁ କିନ୍ତୁ ମୁଁ ବେଶ୍ କିଛି ଦିନ ଲକ୍ଷ୍ୟ କଲି । ଆଖିରେ କଳା ଚଷମା, ମତେ ସେ କଣେଇ କଣେଇ ଚାହିଁବାର ମୁଁ ଜାଣି ପାରୁଥାଏ । ମତେ ଭୟ ବି ଲାଗୁଥାଏ । ମନକୁ ଟାଣ କରି ଭାବେ କ'ଣ କରିବ ? ମିଲି ସାଙ୍ଗରେ ଅଛି । ପାଖକୁ ଆସିଲେ ଦୁହେଁ ଧରାଧରି ହୋଇ ଦଉଡ଼ିବୁ । କିନ୍ତୁ ସେ ଯଦି ଆମକୁ ଧରି ପକାଏ ? ତା ଆଖି ଦୁଇଟା ମତେ ଲକ୍ଷ୍ୟ କରୁଥାଏ । ମୁଁ ଜାଣି ପାରେ ।

ମନରେ ଭୟନେଇ ଦିନେ ମୁଁ ସବୁ କଥା ବିଶୁଭାଇଙ୍କୁ କହିଲି । ସେ ଆମ ମାଉସୀ ପୁଅ ଭାଇ । ମେଟ୍ରିକ୍ ପାଶ୍ ପରେ ସେ ଆମ ଘରେ ରହି କ୍ରାଇଷ୍ଟ କଲେଜରେ ପଢୁଥାନ୍ତି । ବାପା ତାଙ୍କୁ ତାଙ୍କ ଅଫିସରେ ଖଣ୍ଡେ ଚାକିରୀରେ ରଖାଇ ଦେଇଥାନ୍ତି । ଏଗାରଟାରେ କଲେଜରୁ ଫେରି ସେ ଆମ ଘରେ ଖାଇପିଇ ଅଫିସ କରନ୍ତି । ଫେରନ୍ତି ଚାରିଟା, ପାଞ୍ଚଟାରେ । ସେ ଆମର ଏକ ପ୍ରକାର ଗାଡ଼ିୟାନ୍ କହିବାକୁ ଗଲେ, ଆମର ଦେହପା ହେଲେ ଔଷଧ ଠାରୁ ଆରମ୍ଭ କରି ପଢ଼ାପଢ଼ି ସବୁ ସେ ଦେଖନ୍ତି । ବାପା ତାଙ୍କୁ ବହୁତ ଭଲ ପାନ୍ତି ବିଶ୍ୱାସ କରନ୍ତି ମଧ୍ୟ, ଆଉ ସମ୍ଭାଳି ନପାରି ମୁଁ ବିଶୁ ଭାଇଙ୍କୁ ସବୁ କଥା କହିଲି । ସବୁ ଶୁଣି ସେ ହସିଲେ - କହିଲେ ଏତେ ଡ଼ରୁଚୁ କାହିଁକି ? ମୋ ଅଫିସତ ପାଞ୍ଚଟାରେ ସରୁଛି । ରାଷ୍ଟ୍ରଭାଷା ଅଫିସ୍ ପାଖରେ । ତମେ ସେଇଠି ଥିବ । ମୁଁ ସାଙ୍ଗରେ ନେଇ ଆସିବି ।

ସତକୁ ସତ ତା ପରଦିନ ଆମେ ରାଷ୍ଟ୍ରଭାଷାରୁ ପଢ଼ାପଢ଼ି ସାରି ବାହାରିଲାବେଳକୁ ବିଶୁଭାଇ ଆସି ପହଞ୍ଚିଗଲେ । ତାଙ୍କୁ ଦେଖି ମୋ ମନରେ ବହୁତ ସାହାସ ଆସିଲା । ଆମେ ସବୁ ଏକାଠି ବାହାରିଲୁ । କିଛି ବାଟ ଆଗେଇଲା ପରେ ପଛରୁ ଜଣେ ଡ଼ାକ ପକାଇଲା ଆରେ ବିଶ୍ୱନାଥ ବାବୁ ଆପଣ ଇଆଡ଼େ କୁଆଡ଼େ ? ବିଶୁଭାଇ ପଛକୁ ଚାହିଁ ପଚାରିଲା, ବିକ୍ରମ ବାବୁ, ଆପଣ । ତମେ ? ମୁଁ ଭାବିଲି ପଛରୁ କିଏ ଡ଼ାକିଲା ? ତମେ ଏପଟେ କ'ଣ ବୁଲାବୁଲି ପାଇଁ ? ହଁ ନଇକୂଳ ପବନ ଭଲ ବୋହୁଛି । ମୁଁ ଅଫିସ ଫେରନ୍ତି ମୋ ଭଉଣୀମାନଙ୍କୁ ରାଷ୍ଟ୍ରଭାଷା ଅଫିସରୁ ନବାପାଇଁ । ସେଠାରେ ପଢ଼ାପଢ଼ଇ ସାରି ଫେରନ୍ତି ତ ! ସଂଧ୍ୟାରେ କେହି ଜଣେ ସାଙ୍ଗରେ ଥିଲେ ଭଲ ।

ଦୁହେଁ ସାଙ୍ଗ ହୋଇ ଚାଲିଲେ, ତାଙ୍କ କଥାବାର୍ତ୍ତା ମୁଁ ବେଶ୍ ଶୁଣି ପାରୁଥାଏ । ବିକ୍ରମ କହୁଥାଏ ସଂଧ୍ୟାରେ କ'ଣ କରୁଛନ୍ତି ଆସି ହଷ୍ଟେଲ ଆଡ଼େ ଆସୁ ନାହାଁନ୍ତି ? ଏକାଠି ପଢ଼ାପଢ଼ି କରିବା, ବିଶୁ ଭାଇ ହସିଲେ, କହିଲେ ମୋର ଆଉ ସକାଳ ସଂଜ କ'ଣ ବିକ୍ରମ ବାବୁ ? ସକାଳ କଲେଜ ସାରି କ'ଣ ଗଣ୍ଡେ ଖାଇଦେଇ ଅଫିସ ବାହାରିବି । ଫେରିବାକୁ ସଂଧ୍ୟା



ପାଞ୍ଚଟା । ଜଳଖିଆ ସାରି ବଢାରହାଟ ପରେ ପୁଣି ଏ ପିଲାଙ୍କର ପଢ଼ାପଢ଼ି ଦାୟିତ୍ୱ ମୋର । ସେ ସବୁ ସରିବା ବେଳକୁ ରାତି ନଅଟା । ସେତେବେଳ ଆଉ କୁଆଡ଼େ ଯିବି ? ଆପଣମାନେ ବଡ଼ଘର ପିଲା, ସବୁଖର୍ଚ୍ଚ ଆପଣ ମାନଙ୍କର ବାପା ଚଳାଉଛନ୍ତି । ମୋର କିନ୍ତୁ ଚାକିରୀ ଖଣ୍ଡେ କରିବାତ ନିହାତି ଦରକାର । ଚାକିରୀ ଖଣ୍ଡିକ ସମ୍ଭାଳ । ରହିବା ଯାଗା ମଉସା ଦେଇଛନ୍ତି । ସେଇଥିପାଇଁ କୌଣସିମତେ ଏଯାଏ ଆସିଲିଣି ।

ବିକ୍ରମବାବୁ ଆଉ କିଛି ନ କହି ମତେ ଟିକେ କଣେଇ ଚାହିଁ କହିଲା - ହଉ ଚାଲିଲି ବିଶୁବାବୁ କାଲି କଲେଜରେ ଦେଖା ହବ । ସେ ଗଲାପରେ ବିଶୁଭାଇ କହିଲା - ମୋ ଭଉଣୀ ବୋଲି ଜଣାଇ ଦେଇଛି । ଏଥର ଟିକେ ସାବଧାନେ ହବ । କିନ୍ତୁ କଲେଜରେ ମୋ ପିଛା ଛାଡ଼ିବ ନାହିଁ । ମୁଁ ତାକୁ ଜାଣେ । ଧନୀ ବାପର ପୁଅତ ଟିକେ ବେଆଡ଼ା ଧରି ଯାଇଛି । ବଜାରୀ ଛତରା ନୁହଁ ତତେ ଦେଖି ପ୍ରେମରେ ପଡ଼ିଯାଇଛି । ମିଲି ଏ ପର୍ଯ୍ୟନ୍ତ ସବୁ ଶୁଣୁଥିଲା । ପ୍ରଥମେ କିଛି ବୁଝିପାରି ନଥିଲା । ଜାଣିଲା ପରେ କହିଲା - ବିଶୁ ଭାଇ ଯାହାକୁହ ଟୋକାଟା ବେଶ୍ ସୁନ୍ଦର ଅଛି ତ ? ସେ ବିକ୍ରମ ହଉ କି ବିଜୟ ହଉ । ଚାକିରୀ ବାକିରୀ କରୁ ଅପା ପାଇଁ ପ୍ରସ୍ତାବ ପକାଇବା ଭଲ ମାନିବ ? ମୁଁ ତାକୁ ଗୋଟେ ଚାପୁଡ଼ା ମାରି କହିଲି ରଖି ତୋ ଫାଜିଲାମି । ବେଶୀ ଚାଲାକି କଲେ ବାପାଙ୍କୁ କହିଦେବି ।

ବିଶୁଭାଇ ତତ୍ତ୍ୱାବଧାନରେ ଆମେ ପ୍ରାୟ ଯିବା ଆସିବା କଲୁ । ମଝିରେ ମଝିରେ ବିକ୍ରମ ଆସି ଲୁଚିଯାଏ । ଉପରେ ପଡ଼ି ମୋ ସହିତ ଗପସପ କରିବାର ଚେଷ୍ଟା କରେ । ମୁଁ କିଛି କହିବା ପୂର୍ବରୁ ମିଲି ତା ପ୍ରଶ୍ନର ଉତ୍ତର ଦେଇଦିଏ । ମୋର କିଛି କହିବା ଦରକାର ପଡ଼େ ନାହିଁ । ବିଶୁଭାଇ କହେ ତୋ ଲାଗି ମତେ ଏବେ କଲେଜ କ୍ୟାଣ୍ଟିନରେ ପ୍ରାୟ ଜଳଖିଆ ଖାଇବାକୁ ପଡୁଛି । ମନା କଲେ ବିକ୍ରମ ମୋତେ ଛାଡୁ ନାହିଁ । ତାର ସାହାସ ଦେଖ ମତେ କେତେଥର କହିଲାଣି ତାକୁ ଘରକୁ ଡ଼ାକି ସମସ୍ତଙ୍କ ସହିତ ପରିଚୟ କରାଇ ଦେବାକୁ । ସମସ୍ତଙ୍କ କଥା ମିଛ ସେ ଚାହେଁ ତୋ ସହିତ ଟିକେ ଗପସପ କରିବାକୁ । ମତ୍ ଦେଖି ଶାଗୁଣା ପରି ହଉଛି । ତୁ ମତେ ବଡ଼ ହଇରାଣରେ ପକାଇଲୁ ? ଡ଼ାକିବି ଦିନେ ?

ମୁଁ ଚିଡ଼ିଯାଇ କହିଲି ସେମିତି ଫାଜିଲାମି କଲେ ବାପାଙ୍କୁ କହିଦେବି ଯେ ତମର ମଧ୍ୟସ୍ଥି କରିବା ଛାଡ଼ିଯିବ । ବିଶୁ ଭାଇ ହସି ହସି ପଳାଇଲେ ।

ଏଇଭଳି କିଛି ଦିନ ଚାଲିଲା । ମଝିରେ ଦେଖିଲି ଆମ ସ୍କୁଲ ଯିବା ସମୟରେ କଲେଜ ଗେଟ୍ ପଖେ ଠିଆ ହେଇଥାଏ । ମତେ ଦେଖିଲେ କିଛି ନଜାଣିଲା ପରି ମୁହଁ ଫେରାଇ ହଷ୍ଟେଲ ଭିତରେ ପଶିଯାଏ । ମିଲି ତା ରଙ୍ଗଢ଼ଙ୍ଗ ଦେଖି ହସି ହସି ଗଡ଼ିଯାଏ, କହେ ଯିବିକି ଅପା ତା ପାଖକୁ କହିବି ପଢ଼ାପଢ଼ି କରି ଚାକିରୀ କର ତା ପରେ ପ୍ରସ୍ତାବ ନେଇ ଆସିବ । ମୁଁ ପଚାରେ କାହାପାଇଁ ତୋ ପାଇଁ ନା ମୋ ପାଇଁ ? ସେ କହେ ଯାହା ପାଇଁ ସେ କହିବ, ମିଲିର ସବୁଦିନେ ଏମିତି ଫାଜିଲାମି କଥା ।



ସେ ଦିନ ଥାଏ ରବିବାର । ମୋ ମାମୁଁ ଆସିଥାନ୍ତି, ମାମୁଁ ଆସିଲେ ଆମେ ସବୁଭାରି ଖୁସି ହେଉ । ତାଙ୍କ ସହିତ ଆମେ ସବୁ ଥିଏଟର ସିନେମା ଯାଉଁ । ଆମ ସହିତ ବୋଉ ମଧ୍ୟ ଯାଏ । ମାମୁଁ କହିଲେ ବାପା ମନା କରିପାରନ୍ତି ନାହିଁ । ଗତ ଥର ଆମେ ସବୁ ତାଙ୍କ ସହିତ ସିନେମା ବାହାରିଲୁଁ । ପ୍ରଭାତ ହଲ୍‌ରେ "ଶକୁନ୍ତଳା ପଡ଼ିଥାଏ, ବିଶୁ ଭାଇ ଓ ବାପା ରହିଲେ ଘର ଚର୍ଜରେ । ସମସ୍ତଙ୍କ ସୁବିଧା ଲାଗି ଆମେ ସମସ୍ତେ ଘୋଡ଼ା ଗାଡ଼ିରେ ଗଲୁ । ଫେରିବାକୁ ରାତି ଦଶଟା, ବିଶୁ ଭାଇଥିଲେ ରୋଷେଇ ଚର୍ଜରେ ।

ତା ପରଦିନ ଥାଏ ସୋମବାର । ମିଲି ଅଧାବାଟରୁ ଘରକୁ ଫେରିଗଲା । ତା ଗୋଡ଼ରେ ଗୋଟେ ଲୁହା କଣ୍ଟା ପଶିଗଲା । କଣ୍ଟାଟା ଅବଶ୍ୟ ବାହାରି ଗଲା । ରକ୍ତ ବୋହୁଥାଏ, ମୁଁ ଗୋଟେ ରିକ୍ସା ଡ଼ାକି ତାକୁ ଘରକୁ ପଠାଇ ଦେଲି । ସ୍କୁଲଗେଟେ ପାଖେ ପହଞ୍ଚିଲା ବେଳକୁ ମୋର ଟିକେ ଡ଼େରି ହେଇ ଯାଇଥାଏ । କିନ୍ତୁ ଗେଟ୍ ପାଖେ ପହଞ୍ଚି ମୁଁ ଚମକି ପଡିଲି । ଗେଟ୍ ପାଖରେ ବିକ୍ରମ ଠିଆ ହେଇଛି । ମତେ ଏକୁଟିଆ ଦେଖି କ'ଣ କହିବ କହିବ ହେଇ ଆଗେଇ ଆସୁଥିଲା । ମୁଁ କୌଣସି ମତେ ତାକୁ ଆଡ଼େଇ ହେଇ ଗେଟ୍ ଭିତରେ ପଶିଗଲି । ମୋ ଛାତି ଧକ ଧକ ହେଇ ଦେହରୁ ଡ଼ରରେ ଝାଳ ବୋହିଗଲା । ଆଜି ମିଲି ମୋ ସହିତ ନାହିଁ, ମୋର ଅଧା ସାହାସ ନାହିଁ ।

ଦଶମ ଶ୍ରେଣୀ କ୍ଲାସ ମୋର ଦୋମହଲାରେ । କୌଣସି ମତେ ସିଡ଼ି ଡ଼େଇଁ ଡ଼େଇଁ ମୁଁ ମୋ ରୁମ୍‌କୁ ପଶି ସିଟ୍‌ରେ ବସିଗଲି । ମୋ ପାଖ ସିଟ୍‌ରେ ପ୍ରମିଳା । ଆମ ଘରଠୁ ତାଙ୍କ ଘର ବେଶ୍ ପାଖରେ । ମୁଁ ପ୍ରାୟ ତାଙ୍କ ଘରକୁ ଯାଏ । ସେ ମୋର ଡ଼େରି କଥା ପଚାରିଲା, ତାକୁ ମିଛ କଥା କହିଲି । କିଛି ସମୟ ପରେ କ୍ଲାସ ଆରମ୍ଭ ହେଲା, ମିସ୍ ଜେଠିଙ୍କର ଇଂରାଜୀ କ୍ଲାସ, ତାଙ୍କୁ ଆମେ ସମସ୍ତେ ଡ଼ରୁ ଯେତିକି ଭଲପାଉ ସେତିକି । ସବୁ ଟିଚରଙ୍କ ଅପେକ୍ଷା ସେ ଭଲ ପଢ଼ାନ୍ତି । ତାଙ୍କ ପଢ଼ାଇବା ଭିତରେ ଆମ ଅଫିସ ପିଅନ ସୁଦାମ ଆସି ତାଙ୍କୁ ଖଣ୍ଡେ ଚିଠି ଦେଲା । ସେ ଚିଠି ଖଣ୍ଡିକ ପଢ଼ି ମୋ ଆଡ଼କୁ ଚହିଁ କହିଲେ - ଜୟନ୍ତୀ ତମକୁ ହେଡ୍‌ମିସ୍ଟ୍ରେସ୍ ଖେଳ ଛୁଟୀରେ ଦେଖା କରିବାକୁ କହିଛନ୍ତି । ତାଙ୍କ ରୁମ୍‌ରେ ଦେଖା କରିବ ହେଲା । ସୁଦାମ ଚଳିଗଲା ।

ମୋ ମୁଣ୍ଡ ବୁଲାଇ ଦେଲା । କାହିଁକି ଡ଼କାଇଛନ୍ତି, କ'ଣ କହିବେ ସେଇ ଚିନ୍ତାରେ ମୁଁ ଅନ୍ୟ ପିରିୟଡ୍ ଗୁଡ଼ିକ ସ୍ଥିର ହେଇ ବସି ପାରିଲି ନାହିଁ । ସେ ଛତରା ବିକ୍ରମ ଗେଟ୍ ପାଖରେ ଥିଲା । ମୁଁ ଆସିବା ପରେ ତାଙ୍କ ପାଖକୁ ଯାଇ କ'ଣ କହିଲା କି ? ମୁଁ ତ ତା ସହିତ ଦିନେବି କଥାବାର୍ତ୍ତା କରିନି । କ'ଣ କହିଛି ନ କହିଛି ମୋର ସେ ଚିନ୍ତା । ମୋ ମନ ଏତେ ଅସ୍ଥିର ଲାଗୁଥାଏ ଯେ ମୁଁ ଖାଲି ଖେଳଛୁଟୀକୁ ଅପେକ୍ଷା କରିଥାଏ । ଖେଳଛୁଟୀ ଆମର ସାତେ ଗୋଟାଏରେ । ମୋ ଅବସ୍ଥା ଦେଖି ପ୍ରମିଳା କହିଲା ଡ଼ରୁଛୁ କାହିଁକି ? ଚଳ ମୁଁ ତୋ ସାଙ୍ଗରେ ଯିବି । କ'ଣ ହେଉଛି ତ କହୁନୁ ? - ପରେ କହିବି କହି ମୁଁ ଆଗେଇଲି ।



ହେଡ୍‌ମିସ୍‌ଟ୍ରେସ୍‌ଙ୍କ ରୁମ୍ ପାଖରେ ସେ ମତେ ଏକୁଟିଆ ଡ଼କାଇ ନେଲେ । କହିଲେ ଆଜି ଡ଼ାକରେ ତମର ଖଣ୍ଡେ ଚିଠି ଆସିଛି ନିଅ ପଢ଼ କହି ଖଣ୍ଡେ ଲଫାପା ବଢ଼ାଇ ଦେଲେ । ଚିଠି ଖଣ୍ଡ ଖୋଲି ପଢ଼ିଲି - ଲେଖାଅଛି -

ପ୍ରାଣର ଜୟନ୍ତୀ,

ତମକୁ କାଲି ସିନେମାରେ ଦେଖିଲି । ତମ ପରିବାରଙ୍କ ସହିତ ଆଗ ଧାଡ଼ିରେ ବସିଥିଲ । ମନ ହେଉଥିଲା ତମ ପାଖକୁ ଯାଇ ଦୁଇଚାରିପଦ କଥାବାର୍ତ୍ତା କରିବାକୁ । କିନ୍ତୁ ତମେ ମତେ ଚିହ୍ନି ମଧ୍ୟ ମୁଁ ତମ ପାଖରେ ଅପରିଚିତ । ପଦେ କଥାବି ମୋ ସହିତ କହିଲ ନାହିଁ । ଜୟନ୍ତୀ ତମେ ତ ଦେଖିଲ ଶକୁନ୍ତଳା ସିନେମା । ଜୟନ୍ତୀ ଶକୁନ୍ତଳା କ'ଣ ଦୁଷ୍ମନ୍ତଙ୍କୁ ଚିହ୍ନି ଥିଲେ କି ? ତେଣୁ ଆମେ ପରସ୍ପର ଅପରିଚିତ ନୁହଁନ୍ତି । ମୁଁ ଦିନରାତି କେବଳ ତମରି ସ୍ୱପ୍ନ ଦେଖୁଛି । ମତେ ନିରାଶ କରିବ ନାହିଁ । ଯେଉଁଠି ସୁବିଧା ହବ ମତେ ଥରେ ଦେଖା କରିବ । ତମର ପ୍ରଣୟ ପାର୍ଥୀ ।

ବିକ୍ରମ

ଚିଠିଖଣ୍ଡ ପଢ଼ି ସାରିବା ବେଳକୁ ମୋ ଦେହ ଗୋଡ଼ ହାତ ଥରୁଥାଏ । ହେଡ୍‌ମିସ୍‌ଟ୍ରେସ୍ କହିଲେ ତମର କିଛି ଦୋଷ ନାହିଁ ମୁଁ ଜାଣେ । କିଏ ଗୋଟେ ବଜାରୀ ଟୋକା ତମ ପିଛା ଲାଗିଛି । ମୋର ଉଚିତ ତମ ଗାର୍ଡ଼ିୟନଙ୍କୁ ଜଣାଇବା । ସେ ପିଲାକୁ ସାବଧାନ କରି ନଦେଲେ ପରେ ଆହୁରି କିଛି ଅପ୍ରିତିକର ଘଟଣା ଘଟାଇବ । ମତେ ଚିଠିଟା ଦିଅ । କାଲି ତମ ବାପାଙ୍କୁ ପଠାଇବ । ତାଙ୍କୁ ଚିଠିଟା ଦେଇ ମୁଁ ଘରୁ ବାହାରି ଆସିଲି । ବାହାରେ ପ୍ରମିଳା ଠିଆ ହେଉଥିଲା । ପରେ ସବୁ କହିବି କହି ତା ସହିତ କ୍ଲାସକୁ ଫେରିଲି । ସେଦିନ ଆଉ ରାଷ୍ଟ୍ରଭାଷା କ୍ଲାସ ନକରି ସିଧା ଘରକୁ ଫେରି ଆସିଲି । ମିଲି ଘରକୁ ଫେରିବା ବେଳେ ତାକୁ ମୁଁ ହିନ୍ଦିଶିକ୍ଷା ନଯିବା କଥା ବିଶୁ ଭାଇକୁ ଜଣାଇବାକୁ କହି ଦେଇଥିଲି ।

ଜଳଖିଆ ଖାଇବାକୁ ମନ ନଥାଏ କିନ୍ତୁ ଅଳ୍ପ କିଛି ଖାଇସାରି ମିଲି ଗୋଡ଼ ଦେଖିଲି । ବୋଉ ତା ଗୋଡ଼ରେ ହଳଦୀ ଗରମ କରି ଲଦି ପଟି ବାନ୍ଧି ଦେଇଥାଏ । ବିଶୁ ଭାଇ ପାଞ୍ଚଟାରେ ଫେରିଲା । ତାଙ୍କ ପାଇଁ ଅଲଗା ଛୋଟ ରୁମ୍‌ଥାଏ । ସେ ଲୁଗାପଟା ବଦଳାଇବାକୁ ଗଲାକ୍ଷଣି ମୁଁ ତାଙ୍କ ପଛେ ପଛେ ଗଲି । ସେ ମତେ କିଛି ପଚାରିବା ଆଗରୁ ମୁଁ ଝର ଝର ହେଇ କାନ୍ଦି ପକାଇଲି । ସେ ମତେ ଦେଖି ଆଶ୍ଚର୍ଯ୍ୟ ହେଇ ପଚାରିଲା କ'ଣ ହେଲା ? ଏମିତି କାନ୍ଦୁଛୁ କାହିଁକି ?  କ'ଣ ହେଲା ? ବହୁ କଷ୍ଟରେ ସ୍କୁଲରେ ଘଟିଥିବା ଘଟଣା ତାଙ୍କୁ ସବୁ କହିଲି । ହେଡ୍‌ମିଷ୍ଟ୍ରିସେ ବାପାଙ୍କୁ ଡ଼କାଇଛନ୍ତି ଶୁଣି ସେ କହିଲେ ତୁ କାନ୍ଦୁଛୁ କାହିଁକି ? ତୋର ଦୋଷ କ'ଣ ? ମଉସା ଆସନ୍ତୁ ତାଙ୍କ ସହିତ ମୁଁ କଥାବାର୍ତ୍ତା କରି ତାକୁ ମୁଁ ଦେଖୁଛି । ଦରକାର ପଡ଼ିଲେ



ସେ ଚିଠି ନେଇ ମୁଁ ଆମ ପ୍ରିନ୍‌ସିପାଲଙ୍କୁ ଦେଖାଇବି । ତା ପ୍ରେମ ଛଡ଼ାଇବି । କଲେଜରୁ ଏକାଥରେ ବିଦାହବ । ତୁ ମୋତେ ଡ଼ର ନାହିଁ । ସେ ଛୋରଟା କ'ଣ କରିବ ?

ତା ପରଦିନ ସ୍କୁଲକୁ ଯିବାକୁ ମୋର ସାହାସ ନଥାଏ । ଗୋଡ଼ପାଇଁ ମିଳି ଗଲାନାହିଁ । ମୁଁ ବାହାରିଲା ବେଳେ ବାପା କହିଲେ ତୁ ଯା ମୁଁ ପଛରେ ବିଶୁକୁ ନେଇ ଯାଉଛି ଯେ ହେଡ୍‌ମିସ୍‌ଷ୍ଟ୍ରେସ୍‌କୁ ଦେଖା କରିବାକୁ ।

ସେମାନେ ଯାଇଁ ହେଡ୍‌ମିସ୍‌ଷ୍ଟ୍ରେସ୍‌ଙ୍କ ସହିତ କ'ଣ କଥା ହେଲେ ମୁଁ ଜାଣେ ନାହିଁ । ମୋର ଦ୍ୱିତୀୟ ପିରୟଡ଼୍‌ରେ ପିଅନ ଆସି ମତେ ଡ଼ାକି ନେଲା । ବାପା, ବିଶୁଭାଇ ବସିଛନ୍ତି ହେଡ଼୍‌ମିସ୍‌ଷ୍ଟ୍ରେସଙ୍କ ପାଖରେ । ବିକ୍ରମ ତଳକୁ ମୁହଁପୋତି ଛିଡ଼ା ହେଇଛି । ମୁଁ ରୁମ୍‌କୁ ପଶିଲା ପରେ ମତେ ମୁହଁ ଟେକି ଚାହିଁଲା ନାହିଁ ମଧ୍ୟ । ମତେ ଦେଖି ବିଶୁଭାଇ କହିଲା - ବିକ୍ରମ ତମେ ଯଦି କାନଧରି ସମସ୍ତଙ୍କୁ କ୍ଷମା ନ ମାଗିବ ମୁଁ ଏ ଚିଠିଧରି ପ୍ରିନ୍‌ସପାଲଙ୍କ ପାଖକୁ ଯିବି । ତାଙ୍କୁ ତ ଯାଣ । ତା ପରେ ତମେ ପାଠପଢ଼ା ସହିତ କଲେଜରୁ ବିଦା ହବ । ତମେ କ'ଣ ଚାହୁଁଛ କୁହ । ଭଦ୍ରଘରର ଝିଅ ପିଲାଙ୍କ ସହିତ ଏଭଳି ବ୍ୟବହାର କରୁଥିବା ପିଲାକୁ ସେ କଲେଜରେ ରଖିବେ ନାହିଁ । ତାଙ୍କର କି ଭଳି ସୁନାମ ଅଛି ତମେ ଭଲଭାବେ ଜାଣ । ତାଙ୍କ କାନରେ ଏ ସବୁ ପଡ଼ିଲେ ......... ।

ମୋ ବାପା କିନ୍ତୁ ଏବେଯାଏ କିଛି କହୁନଥିଲେ । ବିଶୁଭାଇ କଥା ସରିଲା ପରେ ସେ ପଚାରିଲେ - ଆଚ୍ଛା ବିକ୍ରମ ବାବୁ ତମ ଘର କେଉଁଠି ? ହଷ୍ଟେଲରେ ରୁହ ନାଁ ଏଠି କଟକ ଟାଉନ୍‌ରେ ଘର ଅଛି ? ତମ ବାପାଙ୍କ ନାଁ କ'ଣ ? ମୁଁ ତାଙ୍କ ସହିତ ଦେଖା କରିବାକୁ ଚାହେଁ । ବାପାଙ୍କ ସ୍ୱର ଗମ୍ଭୀର ।

ବିକ୍ରମ ଯେମିତି ଅକୂଳରେ କୂଳ ପାଇଲା । କହିଲା - ଆମ ଘର ଛତରାବଜାରରେ । ମୋ ବାପା ଆଦିକାନ୍ଦ ମଲ୍ଲିକ । ହାଇକୋର୍ଟ ଜଜ୍ ଥିଲେ । ରିଟାର୍ୟଡ଼୍ ପରେ ଘରେ ପ୍ରାକ୍‌ଟିସ୍ କରୁଛନ୍ତି । ଆପଣ ତାଙ୍କୁ ............ ଆଚ୍ଛା ତମେ ଆଦିକାନ୍ଦ ବାବୁଙ୍କ ପୁଅ । ସେ ମୋର ପୁରୁଣା ବନ୍ଧୁ । ବିଶୁ ଭାଇ ଆମେ ଆଦିକାନ୍ଦ ବାବୁଙ୍କ ସହିତ ଦେଖା କରିବା, ସେ ଜଜ୍ ବାରିଷ୍ଟର ଲୋକ । ତମ ପ୍ରିନ୍‌ସପାଲଙ୍କ ଠାରୁ ସେ ଭଲ ବିଚାର କରିବେ । ତାଙ୍କ ବିଚାର ବେଶ୍ ଗୁରୁତ୍ୱପୂର୍ଣ୍ଣ ହବ, ନୁହଁକି ?

ଏତିକି ଶୁଣିଲା ପରେ ବିକ୍ରମ ବାପାଙ୍କ ଗୋଡ଼ ଧରି ବସି ପଡ଼ିଲା । ବାପାଙ୍କ ଗମ୍ଭୀର ସ୍ୱର ତା ମୁଣ୍ଡରେ ବଜ୍ର ପଡ଼ିଲା ପରି ଲାଗିଲା । କାନ ଧରି କାନ୍ଦ କାନ୍ଦି କହିଲା - ମତେ କ୍ଷମା କରିଦିଅନ୍ତୁ ସାର୍ । ଆଉ କେବେ ଜୀବନରେ ଏ ଭୂଲ୍ କରିବି ନାହିଁ । ବାପାଙ୍କ କାନରେ ପଡ଼ିଲେ ମତେ ତେଜ୍ୟପୁତ୍ର କରିଦେବେ । ମତେ କ୍ଷମା ପରନ୍ତୁ । ମୁଁ ମାନୁଛି ମୁଁ ଭୂଲ୍ କରି



ପକାଉଛି । ଏଇ ପ୍ରଥମ ଓ ଶେଷ । ମତେ ବିଶ୍ୱାସ କରନ୍ତୁ ସାର୍ । କେବେବି ଆଉ ଏ ଭଳି ଭୂଲ୍ ହବ ନାହିଁ । ମୁଁ ମୋ ଦୋଷ ମାନୁଛି । ବାପା ଜାଣିଲେ ମତେ ତ୍ୟେଜପୁତ୍ର କରିବେ । କ୍ଷମା କରନ୍ତୁ । ମୁଁ ମାନୁଛି ଭୂଲ କରି ପକାଇଛି । ଆଉ କେବେ ଏଭଳି ଭୂଲ୍ କରିବି ନାହିଁ ସାର୍ । ଚିଠିଟା ଚିରି ଦିଅନ୍ତୁ ସାର୍ ।

ବାପା ତାକୁ ତଳୁ ଉଠାଇଧରି କହିଲେ ହଉ ଯାଅ । ତମ ଉପରେ ବିଶ୍ୱାସ କରି ଆଜି ତମକୁ କ୍ଷମା କଲି । ଆଉ ଯେମିତି ଏ ଭଳି କାମ ନକର । ଯାଅ ଏଥର

ବିକ୍ରମ ବାହାରି ଗଲାପରେ ବାପାଙ୍କର ସହଜ ସରଳ ନିଷ୍ପତ୍ତି ଦେଖି ହେଡ୍‌ମିସ୍‌ଟ୍ରେସ ଖୁସି ହେଲେ । ବାପା ତାଙ୍କ ସହିତ ହାତ ମିଳାଇ ମତେ ଓ ବିଶୁଭାଇଙ୍କୁ ସାଙ୍ଗରେ ଧରି ବାହାରି ଆସିଲେ ।

ତା ପର ଘଟଣା ଅତି ସଂକ୍ଷିପ୍ତ । ଆଉ ବର୍ଷେ ପଢ଼ି ମୁଁ ସେ ସ୍କୁଲରୁ ମ୍ୟାଟ୍ରିକ୍ ପାଶ କଲି । କିନ୍ତୁ ବିକ୍ରମକୁ ବାଟ ଘାଟରେ କେଉଁଠିବି ଦେଖି ନାହିଁ । ଥରେ କୌତୁହଳ ସମ୍ଭାଳି ନପାରି ବିଶୁଭାଇଙ୍କୁ ତା କଥା ପଚାରିଥିଲି – ବିଶୁଭାଇ ତମ ବନ୍ଧୁ କୁଆଡ଼େ ଗଲେ ? ସେ କହିଲେ – ସେଇ ଘଟଣା ପରେ ସେ ଟିସି ନେଇ ରେଭେନ୍ସାକୁ ପଳାଇଛି । କିଛି କିଛି ପିଲା ତା କଥା ଜାଣି ଯାଉଥିଲେ । ଏଠି ପଢ଼ିବାକୁ ଲାଜ ମାଡ଼ିଲା । କାହିଁକି ପଚାରୁଛୁ । ତା କଥା ତୋର ମନେ ପଡୁଛି କି ? ମୁଁ କହିଲି ହଁ । ସେଦିନ ତାର ଅବସ୍ଥା ଦେଖିଛି ତ ! ହସ ତ ମାଡ଼େ ଏଭଳି ମୂର୍ଖାମୀ ପାଇଁ ଦୟା ଲାଗେ ।

ଆଜି ସେଇ ବିକ୍ରମ କଥା ମିଳି ଫୋନ କରିଥିଲା । ସେଇସବୁ ପିଲାଦିନ କଥା ମୋର ସେ କାଗଜ ପଢ଼ି ମନେ ପଡ଼ିଗଲା । କାଗଜ ପଢ଼ା ସରିବା ବେଳକୁ ଆମ ବାବୁ ପଚାରିଲେ କ'ଣ ପେପର ପଢ଼ା ସରିଲା ? ମତେ ଆଉ କପେ ଚା' ମିଳିବ କି ?





# ଘର ବାହୁଡ଼ା

ଗୋବିନ୍ଦ ବାବୁଙ୍କୁ ଚାହା କପ୍‌ଟା ବଢ଼ାଇ ଦେଇ ସୁରମା ଦେବୀ ଗୋଟେ ଚେୟାରରେ ତାଙ୍କ ପାଖକୁ ଲାଗି ବସିଲେ । ପଚାରିଲେ ତମକୁ କହିଥିଲି ମନେ ଅଛି ତ ? କ'ଣ ଠିକ୍ କଲ ? ଚାହା କପ୍‌ରେ ମୁହଁ ଲଗାଉ ଲଗାଉ କହିଲେ କେଉଁ କଥା ? ଓହୋ ମନେ ପଡ଼ିଲା, ତମର ସେଇ ଗାଁକୁ ଯିବା କଥା ତ ? ଆଚ୍ଛା ମୁଁ ବୁଝି ପାରୁନି ତମେ ଏଇ କେତେମାସ ହବ ଗାଁ ଗାଁ କାହିଁକି ହଉଛ ? ଗାଁରେ ଆଉ କ'ଣ ଅଛି ଆମର ? ଦୁଇ ବଖରା ଚାଳ ଘର - ଠାକୁର ଘରକୁ ଲାଗି ଆଉ ଦୁଇ ବଖରା ପକ୍କାଘର । ଆଠ, ନଅବର୍ଷ ହେଲା ଗାଁ ଛାଡ଼ିଲେଣି । ସେ ସବୁ କି ଅବସ୍ଥାରେ ଅଛି କିଏ ଜାଣେ ? ଏଇ ଦଶବର୍ଷ ଭିତରେ କେତେ ବର୍ଷା, ଖରା, ଶୀତ ଗଲାଣି । ସେ ଚାଳଘର ଆଉଥିବ ?

ସୁରମା ଦେବୀ ବିରକ୍ତ ହେଇ ସ୍ୱାମୀଙ୍କ ମୁହଁକୁ ଚାହିଁଲେ । କହିଲେ କେଦାର ଦି  ମାସ ତଳେ ଆସିଥିଲା । ନଡ଼ିଆ କଦଳୀ ଆମ୍ବ କିଛି ନେଇ । ମୁଁ ତାକୁ ପଚାରିଥିଲି । ସେ କହୁଥିଲା ଗତବର୍ଷ ଘର ଛାଉଣୀ କରି ଦେଉଛି । ସବୁ ସେ ସଫା ସୁତୁରା କରି ରଖିଛି । ଆମେ ଥରେ ଗଲେ ସିନା କ'ଣ କରିଛି ନ କରିଛି ଜାଣିବା । ଏଠି ବସି ଦୋଷ ଦେଲେ କ'ଣ ହବ ? ଜମିତ ତମର ୫/୭ ଖଣ୍ଡ ମାତ୍ର ଥିଲା ମୁଁ ଶୁଣିଛି, ସେଥିରୁ କି ଧାନ ଚାଉଳ ହଉଥିବ ଯେ ସେ ସବୁ ଖାଲି ଖାଇଯାଉଛି ବୋଲି ତମ ବାପ ପୁଅଙ୍କ ଧରଣୀ । ତାର ତ ପୁଣି ଛୁଆ ପିଲା ସଂସାର ଅଛି । କିଛିଦିନ ସୁବିଧା ନ ପାଇଲେ ତମ ଦୁଆରେ କାହିଁକି ପଡ଼ିଥିବ । ଫଳ ଖଣ୍ଡେ ଧରି ଆସିଲେତ ତମେ ବାପ ପୁଅ ଦୁହେଁ ତାକୁ ପାଟି କରୁଛ, କ'ଣ ନାଁ ଏଠି ସବୁ ମିଳୁଛି । ଏ ଗୁଡ଼ାଧରି କାହିଁକି ଆସୁଛୁ ? ମୁଁ କ'ଣ କିଛି ବୁଝି ପାରୁନି ଭାବୁଛ । ପଚାଶ ଷାଏ ଦବାକୁ ହୁଏ ତା ବାଟ ଖର୍ଚ୍ଚ ପାଉଚି ସେଇଥି ପାଇଁ ତମର ଆପତ୍ତି । ମୁଁ ସଫାସଫା କହି ଦଉଛି ଆଜି ତମେ ଯାଅ କି ନଯାଅ । ମୁଁ ଏହି ସାତ ଆଠଦିନ ଭିତରେ ଗାଁକୁ ଯାଉଛି । ତମ କଥା ତମେ ବୁଝ ।



କଥା ବାଁରେବାକୁ ଗୋବିନ୍ଦ ବାବୁ ସୁବୋଧ, ଶ୍ୟାମଳୀ ଅଫିସ୍ ଗଲେଣିକି ? ତମ ଯିବା କଥା ତାକୁ ଜଣାଉଛ ? ପିଲା ଦିଟାଙ୍କୁ ନେଇ ସେମାନେ, ଚଳିବେ କେମିତି ? ସୁରମା ଦେବୀ ରାଗିଲା ଆଖିରେ ସ୍ୱାମୀଙ୍କୁ ଚାହିଁଲେ । ସତେବା ତାଙ୍କ ଦିହରେ କିଏ ନିଆଁ ଚେଙ୍କ ମାଡ଼ି ଦେଲା, ଗର୍ଜି ଉଠି ସେ କହିଲେ ସୁବୋଧ କ'ଣ ମୋ ମୁରବି ? ମୁଁ ତାକୁ ପଚାରିବି ? ମୋର ନିଜର କିଛି ମତ କି ମନ ନାହିଁ ? ଗୋବିନ୍ଦ ହଠାତ୍ ସ୍ତ୍ରୀଙ୍କ ହାତ ଧରି କହିଲେ - ଓହୋ । ରାଗୁଛ କାହିଁକି ? ମୁଁ କ'ଣ ଅନୁମତି ଦବାକୁ କହୁଛି । କିଛି ଗୋଟେ ନିଷ୍ପତ୍ତି ନବା ଆଗରୁ ତାଙ୍କୁ ଜଣାଇ ଦବା ଦରକାର ମନେ କଲି । ହଉ ଯିବା କଥାତ ଯିବା, ମୁଁ ଯିବାକୁ ମନା କରୁନାହିଁ ।

ସୁରମା ଦେବି ଓ ଗୋବିନ୍ଦବାବୁ ପ୍ରାୟ ସାତ ଆଠ ବର୍ଷ ପାଖାପାଖି ଏ ଫ୍ଲାଟ ଘରେ ଅଛନ୍ତି । ସେ ଚାକିରୀରୁ ଅବସର ନେବା ପରେ ଏଇ ଭୁବନେଶ୍ୱରରେ ଖଣ୍ଡେ ଘରଭଡ଼ା ନେଇ ରହିଥିଲେ । ସେକ୍ରେଟାରୀଏଟ୍‌ରୁ ଅଣ୍ଡରର ସେକ୍ରେଟାରୀ କାଡ଼ରରୁ ରିଟାୟାର୍ଡ଼ କଲେ । ଦୁଇ ପୁଅ ଓ ଝିଅ ଗୋଟିଏ ପାଠପଢ଼ା ସରିନଥାଏ । ବଡ଼ପୁଅ ସୁବୋଧ ଆସି ଗୋଟେ କମ୍ପାନୀରେ ଜଏନ କଲା । ସାନପୁଅ ପ୍ରମୋଦର ଚାକିରୀ ବମ୍ବେରେ । ଦୁଇପୁଅଙ୍କ ବାହାଘର ପ୍ରାୟ ବର୍ଷେ ଦେଢ଼ ବର୍ଷ ଭିତରେ ସାରିଦେଲେ । ତା ପରେ ଝିଅ ମାଧୁରୀର ଏମ୍.ଏ. ପରେ ବାହାଘର ଏଇ ଦୁଇ ତିନିବର୍ଷ ହେଲା । ରିଟାୟାର୍ଡ଼ମେଣ୍ଟର ସବୁ ଟଙ୍କା ପ୍ରାୟ ଏହିସବୁ କାମରେ ସରିଲା । ଗାଁର କିଛି ଜମି ମଧ୍ୟ ବିକ୍ରି ହେଲା । ବର୍ତ୍ତମାନ ଭରସା କେବଳ ପେନ୍‌ସନ୍ । ପେନ୍‌ସନ୍ ପାଇ ଥିବାରୁ ଗୋବିନ୍ଦବାବୁ ପ୍ରାୟ ତିରିଶ ହଜାର ଟଙ୍କା ପେନ୍‌ସନ୍ ପାନ୍ତି । ତାଙ୍କ ପାଇଁ ଓ ସ୍ତ୍ରୀ ପାଇଁ ଯଥେଷ୍ଟ ସେ ଭାବନ୍ତି ।

ଘର ଭଡ଼ା ଦେଇ ରହିବା ଅପେକ୍ଷା କିଛି ମୋଟା ଟଙ୍କା ଲୋନ୍ କରି ବଡ଼ପୁଅ ସୁବୋଧ ଏଇ ସାତ ଆଠବର୍ଷ ହବ ଫ୍ଲାଟ୍‌ଟି କିଣିଛି, ତିନି ବଖରା ଘର ରୋଷେଇ ଘର ଡାଇନିଙ୍ଗ ପ୍ଲେସ୍ ସାମନାରେ ବାଲ୍‌କୋନି ଘର ପାଇଁ ଗୋବିନ୍ଦ ବାବୁ ମଧ୍ୟ କିଛି ଧାର୍ କରି ପେନ୍‌ସନ୍‌ରୁ ସୁଝିଥିଲେ । ଚଳିବାରେ ଅସୁବିଧା ନାହିଁ । କିନ୍ତୁ ସାନପୁଅ ବୋହୂ କିମ୍ୱା ଝିଅ ଯାଇ ପହଞ୍ଚିଗଲେ କିଛି ଦିନ ଅସୁବିଧା ହୁଏ କିନ୍ତୁ ଆନନ୍ଦ କୋଳାହଳ ଭିତରେ ସେ ଅସୁବିଧା ଜଣା ପଡ଼େ ନାହିଁ । ବଡ଼ବୋହୂ ଶ୍ୟାମଳୀ ମଧ୍ୟ ବ୍ୟାଙ୍କରେ ଚାକିରୀ କରେ । ତାର ଦୁଇଟି ପୁଅ ଟିକୁ - ରିକୁ - ତାଙ୍କ ଜନ୍ମ ପରଠୁଁ ସ୍ତ୍ରୀ ଲୋକଟିଏ ଅଛି । ସକାଳ ଛଟାରେ ଆସି ସଂଧ୍ୟା ଛ ଟାରେ ଯାଏ । ଶ୍ୟାମଳୀ ଫେରିବା ପରେ, ସୁରମା ଦେବୀଙ୍କୁ କିଛି କରିବାକୁ ପଡ଼େ ନାହିଁ । କିନ୍ତୁ ମନ ବୁଝେ ନାହିଁ । ଯେତେହେଲେ ପରଲୋକ ତା ଉପରେ ଭରସା କରି ସବୁ ଛାଡ଼ି ଦବାକୁ ତାଙ୍କ ମନ ମାନେ ନାହିଁ । ତାଙ୍କ ଗାଧୁଆ ପାଧୁ ଖିଆପିଆ ସେ ନିଜେ ଦେଖନ୍ତି ।

ତୁଳସୀ କିଛି ସେତା ପସନ୍ଦ କରେ ନାହିଁ । ଅନେକ ସମୟରେ ଗୁଣୁଗୁଣୁ ହେଇ ଶ୍ୟାମଳୀ ଆଗରେ କ'ଣ ସବୁ କହେ । ଶ୍ୟାମଳୀ ବିରକ୍ତ ହୁଏନି ସତ କିନ୍ତୁ ତାକୁ ଆକଟ ମଧ୍ୟ କରେ



ନାହିଁ । ଖାଇପିଇ ଶୋଇବା ଆଗରୁ ପିଲାଏ ତାଙ୍କ ପାଖକୁ ଦଉଡ଼ି ଆସି ଗପ ଶୁଣିବାକୁ ଲାଗନ୍ତି । କିନ୍ତୁ ତୁଳସୀ ଦୁହିଁଙ୍କୁ ଜୋର କରି ଟାଣିନିଏ ବରଂ ଧମକାଏ ମାମା ଆସନ୍ତୁ ଖାଇବ ଖରାବେଳେ ଶୋଉନ ସଂଜକୁ ଢ଼ୋଳାଇବ । ଏ ସବୁ ଅତି ଛୋଟ ଛୋଟ ଘଟଣା କିନ୍ତୁ ସୁରମାକୁ ବଡ଼ କଷ୍ଟ ଦିଏ । କେବଳ ପିଲାଙ୍କ କଥା ନୁହେଁ ତାଙ୍କ ଝିଅ ମାଧୁରୀ ଆସିଲେ ତିନି ଚାରିଦିନ ପରେ ଶ୍ୟାମଳୀ ପଛରେ ତମେ ତମ ଶାଶୁ ଘରକୁ କେବେ ଯିବିକି ମାଧୁରୀ ? ମୁଁ ଭାବୁଛି ତା ଆଗରୁ ମୁଁ ପିଲାଙ୍କୁ ଧରି ଆମ ଘରଆଡ଼େ ଟିକେ ବୁଲି ଆସନ୍ତି । ଦଶରା ଛୁଟୀ ପିଲାଙ୍କର ସରି ଯିବତ । ସେ କଥାଟା ସୁରମା ଦେବୀଙ୍କୁ ଅଡୁଆ ଲାଗେ ।

ସୁରମା ଦେବୀ ଅନେକ କଥା ବୁଝି ପାରନ୍ତି କିନ୍ତୁ ଚୁପ୍ ରହନ୍ତି । ଗୁହାରୀ କଲାଭଳି ଭରସା ଯୋଗ୍ୟ ଲୋକ କିଏ ? ସୁବୋଧ ସକାଳ ଆଠଟାରୁ ଅଫିସ୍ ବାହାରିଯାଏ, ଫେରେ ପ୍ରାୟ ଆଠଟା ପରେ । କାହାପାଖେ ବସି ଭଲମନ୍ଦ ଶୁଣିବାକୁ ତାର ଧୈର୍ଯ୍ୟ ନଥାଏ । ସାଧାରଣ କଥାଟିଏ କହିଲେ ବି ସେ କହେ ମାଆ ବଡ଼ ଟାୟାର୍ଡ଼ ଲାଗୁଛି ପରେ ଶୁଣିବି । ଆଉ ଗୋବିନ୍ଦ ବାବୁ ତାଙ୍କ ଖିଆପିଆ ସାରି ପାଖ ଆଖ ପଡ଼ୋଶୀଙ୍କ ସହିତ ସମୟ କାଟେ । ବାକୀ ସମୟରେ ଟିଭି ଦେଖା କିମ୍ବା କାଗଜ ପଢ଼ାରେ କଟେ । ଅତିବେଶୀରେ ପୁଅ ବୋହୂଙ୍କ ଖିଆ ପିଆ କିମ୍ବା ନାତୀ ଦୁଇଟିଙ୍କ କଥା ସେ ଥରେ ଦୁଇଥର ପଚାରି ଦିଅନ୍ତି । ଘରେ ତାଙ୍କ ସ୍ତ୍ରୀ ଅଛନ୍ତି । ତାର ଭଲମନ୍ଦ, ଦେହପା ସୁବିଧାକୁ ତାଙ୍କର ଆଉ ମୋଟେ ଧ୍ୟାନ ନାହିଁ । ସେ ବୋଧେ ଭାବନ୍ତି ସେ ସବୁ ଦାୟିତ୍ୱ ପୁଅ ବୋହୂଙ୍କର । ବୟସ ହେଲା ପରେ ଲୋକଗୁଡ଼ା ବିଶେଷତ ପୁରୁଷମାନ ଏତେ ସ୍ୱାର୍ଥପର ହେଇଯାନ୍ତି କେମିତି ସେ ଭାବି ପାରନ୍ତି ନାହିଁ ।

ଅଥଚ ସେ ବାହାହେଉ ଆସିଲା ପରେ ଶାଶୁ ଶଶୁରଙ୍କ ପାଖେ ପାଞ୍ଚ ଛଅ ବର୍ଷ ଚଳିଥିଲେ ସେଇ ଛୋଟ ଗାଁ ଘରେ । ଶାଶୁ ଶଶୁର ଦୁହେଁ ଅତି ସ୍ନେହୀ ନିର୍ମାୟା ଲୋକ । ସହରରେ ଗୋବିନ୍ଦ ବାବୁ ରହୁଥାନ୍ତି ମେସ୍‌ରେ । କିରାଣୀ ଚାକିରୀ । ପ୍ରତି ଶନିବାର ଯାଇ ପହଁଚନ୍ତି । ଦୁଇ ତିନିଟା ଦିନ କେମିତି କଟେ ସୁରମା ଭାବିପାରନ୍ତି ନାହିଁ । ଥରେ ଥରେ ଦୁଇ ଦିନ ଯାଗାରେ ତିନି ଚାରିଦିନ ରହିଯାନ୍ତି, କହନ୍ତି ଅଫିସ ଗଲେ ଛୁଟୀ ଦରଖାସ୍ତ ଦେଇଦେବି । ସୁରମା ଦେବୀ ଏକ ପ୍ରକାର ତାଙ୍କୁ ତଡ଼ିକି ପଠାନ୍ତି । ଶାଶୁ କହନ୍ତି ତୁ ଗୋଟେ ଘର ଭଡ଼ା ନେଇ ବୋହୂକୁ ନେଇଯା ଭୁବନେଶ୍ୱର । ଏଇ ଯିବା ଆସିବାରେ କେତେ ଖର୍ଚ୍ଚ କରିବୁ । ସତକୁ ସତ ବାହାଘର ଚାରିବର୍ଷ ପରେ ଗୋବିନ୍ଦ ବାବୁ ଘର ଭଡ଼ା ନେଲେ । ସେତେବେଳେ ବଡ଼ ପୁଅ ସୁବୋଧ ଜନ୍ମ ହବାର ଥାଏ । ଶାଶୁ ବି ଆସିଲେ ତାଙ୍କ ସହିତ । ଶଶୁର ଗାଁରେ ଏକୁଟିଆ, କେଦାର ପରିବାର ତାଙ୍କ କଥା ବୁଝୁଥିଲେ । ବଡ଼ପୁଅ ଜନ୍ମ ହବାର ଛ ମାସ ପରେ ସେ ଗାଁକୁ ଗଲେ । ଶଶୁରଙ୍କ ଇଚ୍ଛାରେ ସୁବୋଧ ବର୍ଷ ପୁରାଣି ଗାଁରେ କରାଇଥିଲେ ସେ, ତା ପରେ ପ୍ରମୋଦ ଓ ମାଧୁରୀ । ଶାଶୁ ଶଶୁର ତିନି ପିଲାଙ୍କୁ ଦେଖିଛନ୍ତି । ଦୁହିଁଙ୍କର କେତେ ଖୁସି କେତେ ଆନନ୍ଦ । ସୁରମା ଦେବି



ଅନେକ ସମୟରେ ଭାବନ୍ତି ଅଭାବ ଥିଲା, ଅସୁବିଧା ଥିଲା ପରି ଭିତରେ ତାଙ୍କ ସଂସାର ଚାଲିଥିଲା । ପ୍ରାୟ ମାସେ ଦେଢ଼ମାସରେ ସେ ଏକୁଟିଆ ପିଲାଙ୍କୁ ଧରି ଦଶବାରଦିନ ଗାଁରେ ଯାଇ ବୁଲି ଆସନ୍ତି । ଗାଁ ଭୁବନେଶ୍ୱରଠାରୁ ଅଢ଼ବାଟ ପଚିଶ ତିରିଶ ମାଇଲ୍ ଶାଶୁ ଶଶୁର କେତେ ଖୁସି ହୁଅନ୍ତି କୋଟିନିଧି ପାଇଲା ପରି । ଝିଅ ଶ୍ୟାମଳୀ ତ ତାଙ୍କର ସବୁଠୁ ଗେହ୍ଲା । କେବେକାର ପୁରୁଣା ହରଡ଼ ଫାଳିଆ ହାର ଗୋଟେ ତାଙ୍କର ଥିଲା ତାକୁ ଶ୍ୟାମଳୀ ବେକରେ ପିନ୍ଧାଇ ଦେଇଥିଲେ । କହିଥିଲେ ତା ବାହାଘରକୁ ମୁଁ ବଂଚିଥିବିକି ନାହିଁ ଏ ହାରଟା ଘର ରଖିଥିବୁ । ଏତେ ସ୍ନେହଶ୍ରଦ୍ଧା ସତ୍ତ୍ୱେ ସେ ପିଲାଙ୍କୁ ଗାଁରେ ରଖିବାକୁ କେବେ ଚାହାଁନ୍ତି ନାହିଁ । ଶଶୁର କହନ୍ତି ତାଙ୍କ ପାଠ ପଢ଼ାରେ ଅସୁବିଧା ହବ । ଗୋବିନ୍ଦ ବାବୁ ତାଙ୍କ ଗୋଟିଏ ବୋଲି ପୁଅ ଆଉ ଝିଅ ଗିରିଜା ସେଇ ଗାଁ ପାଖରେ ବାହାହେଇଥିଲା । ଦୁଇଟି ପୁଅ ଝିଅ ତାର କିନ୍ତୁ ଅଳ୍ପ ବୟସରେ ସେ ମରିଗଲା । ତା ମରଣ ଶାଶୁ ଶଶୁରଙ୍କୁ ଗୋଟେ ବଡ଼ ଧକ୍କା ତାର ଝିଅଟି ବାହାହେଇ ଗଲାଣି । ପୁଅ ସୁଦାମ ସେଇ ଗାଁ ପାଖ ସ୍କୁଲରେ ଚାକିରୀ କରେ । ଅନେକ ସମୟରେ ଅଜା ଆଇଙ୍କୁ ଦେଖି ଆସେ । ଅତି ସୁଧାର ଶାନ୍ତ, ଶିଷ୍ଟ ପିଲାଟିଏ । ସୁରମା ଦେବୀଙ୍କ ସାନ ପୁଅ ପ୍ରମୋଦ ଠାରୁ ବର୍ଷେ ଖଣ୍ଡେ ସାନ ଭଉଣୀଟି ବଡ଼ ଆଗ ବାହାହେଇ ଯାଇଛି । ଗୋବିନ୍ଦ ବାବୁଙ୍କ ପରିବାର ଧରି ଭୁବନେଶ୍ୱର ଚାଲି ଆସିବା ପରେ ତାଙ୍କ ଶାଶୁ, ଶଶୁରଙ୍କ ଖବର ସୁଦାମ ଓ ତା ବାପା ପ୍ରାୟ ବୁଝୁଥିଲେ ।

ସୁରମା ଦେବୀଙ୍କ ଝିଅ ମାଧୁରୀର ମାଟ୍ରିକତ ପାଶ୍ ଆଗରୁ ଶାଶୁ ଶଶୁର ବର୍ଷକ ଭିତରେ ଡ଼କାଡ଼କି ହେଲା ପରି ଚାଲି ଗଲେ । ସେଇ ସମୟରେ ସୁରମା ଦେବୀ ପ୍ରାୟ ଗୋଟିଏ ବର୍ଷ ଗାଁରେ ଥିଲେ । ବାପ ଘରେ ପାଖରେ ଭଡ଼ା ଘରେ ରହିଥିଲେ । ଦୁଇପୁଅ ଓ ବାପାଙ୍କ ପାଇଁ ଅଫିସରେ ଗୋଟିଏ ପିଅନ ଆସି ରାନ୍ଧି ଦେଉଥିଲା । କୌଣସି ମତେ ଚଳି ଯାଉଥିଲା । ସେଇ ସମୟରୁ କେଦାର ତାଙ୍କ ଘରେ ଅଛି । ଗୁହାଳ ପଛପଟେ ପାଚେରୀକୁ ଲାଗି ଦୁଇ ବଖରା ଘର । ସେ ଓ ତା ସ୍ତ୍ରୀ, ତାର ଗୋଟିଏ ଚାରି ବର୍ଷର ପୁଅଥାଏ । ସୁରମା ଦେବୀଙ୍କୁ ବଡ଼ ଖାତିର । ବିଶ୍ୱାସ ଲୋକଟିଏ ପାଇ ସୁରମା ଦେବୀ ତା ଉପରେ ଘରଦ୍ୱାର ବାଡ଼ି ବଗିଚା ସବୁ ଛାଡ଼ି ନିଶ୍ଚିନ୍ତରେ ଭୁବନେଶ୍ୱର ଫେରିଥିଲେ ଶାଶୁ ଶଶୁରଙ୍କ କ୍ରିୟାକର୍ମ ପରେ । ସେ ଆଜିକୁ ୭/୮ ବର୍ଷ ତଳର କଥା ।

ଏ ଭିତରେ ପିଲାଏ ବାହା ଘେରା ହେଇ ଘର ସଂସାର କଲେଣି । ସୁବୋଧ ବାହାଘର ପରେ ସେମାନେ ଭଡ଼ା ଘର ଛାଡ଼ି ଫ୍ଲାଟଟିଏ କିଣିଥିଲେ । ଶ୍ୟାମଳି ବ୍ୟାଙ୍କରୁ କିଛି ଟଙ୍କା ଲୋନ୍ କଲା, ତା ବାପା ମଧ୍ୟ ପେନ୍‌ସନ୍‌ରୁ କିଛି ମିଶାଇଲେ । ପରମାନେଣ୍ଟ ଘର ଖଣ୍ଡେ ଭୁବନେଶ୍ୱରରେ ହେଲାପରେ ସମସ୍ତେ ନିଶ୍ଚିନ୍ତ ହେଲେ । ପୁଅମାନେ ଅନେକ ସମୟରେ ଭୁବନେଶ୍ୱରରେ ଏତେବର୍ଷ ଚାକିରୀ ଭିତରେ ବାପା କାହିଁକି ଯାଗା ଖଣ୍ଡେ ପକାଇଲେ ନାହିଁ ବୋଲି ଦୋଷ



ଦିଅନ୍ତି । କିନ୍ତୁ କିରାଣୀ ଚାକିରୀରୁ ଉଠି ତିନିଗୋଟି ପିଲାଙ୍କୁ ମଣିଷ କରିବାରେ କି କଷ୍ଟ ସେମାନେ ବୁଝି ପାରନ୍ତି ନାହିଁ । ସୁରମା ଦେବୀ ସେ ଯାଗା ଖଣ୍ଡେ କିଣିବାକୁ ମନ ବଳାଇ ନାହାଁନ୍ତି ସେ କଥା ନୁହଁ । କିନ୍ତୁ ଦରମା ଗଣ୍ଡାକ ହାତକୁ ଆସିଲେ କେଉଁବାଟେ ଆସି କେଉଁବାଟେ ଯାଏ ସେ ନିଜେ ଜାଣି ଦେଖି ସାହାସ କରି ପାରନ୍ତି ନାହିଁ । ପୁଅଙ୍କ ପାଇଁ ଯେତେ ଚିନ୍ତା ନୁହେଁ ଚିନ୍ତା ମାଧୁରୀ । ପାଠ ପଢ଼ା ପରେ ଭଲ ବରଟିଏ ଦେଖି ତାକୁ ପରଘରକୁ ପଠାଇବା ତାଙ୍କର ବଡ଼ ଚିନ୍ତାଥିଲା । ସମ୍ବଳ ଥିଲା ତାଙ୍କର କିଛି ଗହଣା ଓ ବାସନ ପତ୍ର । ପୁଅ ବୋହୁଙ୍କ ପାଖେ ହାତ ପାତିବାକୁ ତାଙ୍କ ମନର କୁଣ୍ଠା, ସେ ଆଗରୁ ସ୍ଥିର କରିଥିଲେ କିଛି ନହେଲେ ଗାଁରୁ କିଛି ଜମି ବିକ୍ରି କରିବେ । ତାଙ୍କ ମନ ଜାଣି ପାତ୍ରଟିଏ ଜୁଟି ଗଲା । ମଗା, ଜଚା ସେମିତି କିଛି ନାହିଁ । ଚାକିରୀ ଭଲ । ଦରମା ପାଉଛି । ଘର ଭଲ, ଜ୍ୱଆଇଁ ଦେବେନ୍ଦ୍ର ସୁବୋଧ ପିଲାଟିଏ ।

ସବୁତ କାମ ଛିଡ଼ିଲାଣି ତେଣୁ ସୁରମା ଦେବୀଙ୍କ ମନ ଗାଁରେ ଯାଇ ନିଜ ସ୍ୱାଧୀନତାରେ ରହିବେ ଚଳିବେ । ବାପା ମାଆ ଗାଁରେ ରହିଲେ ପିଲାମାନେ ବି ଗାଁକୁ ଯିବେ । ଏଠି ଯଦି ଦେଖିପାରିବେ ଗାଁକୁ ଯିବେ ନାହିଁ କାହିଁକି ? କେତେବା ବାଟ ? ମନ ଥିଲେ ଦିନକ ପାଇଁ ଯାଇ ଫେରି ଆସି ପାରିବେ । ପ୍ରମୋଦ ବୟେରେ ଅଛି । ସେ ଏଠାକୁ ବା କେତେଥର ଆସୁଛି ? କେତେକ ଦିନ ପାଇଁ ଆସିବ ଗାଁକୁ ଯିବ । ଟ୍ୟାକ୍ସି ଖଣ୍ଡେ କରି ଗଲେ  ଘଣ୍ଟେ ଦେଢ଼ଘଣ୍ଟା ଭିତରେ ପହଞ୍ଚି ଯିବେ । ପିଲାଦିନେ ସେ ଗାଁକୁ ଯିବାକୁ କେତେ ଭଲ ପାଉଥିଲେ, ଗାଁକୁ ଯିବାର ଥିଲେ ସେ ସମସ୍ତଙ୍କ ଆଗରୁ ତା ଯାମା ପେଣ୍ଟ ଦି ଖଣ୍ଡ ଗୁଡ଼ାଇ ତା ବୋଉ ବ୍ୟାଗରେ ପୁରାଇ ଦିଏ । ଗାଁକୁ ଗଲେ ତାର ପ୍ରଥମ କାମ ବନ୍‌ଶୀ ଖଡ଼ା ଖଣ୍ଡେ ଧରି ବାଡ଼ଇ ପୋଖାରୀରେ ଖଡ଼ା ପକାଇ ବସିବା । କେଉଁଦିନ ଦୁଇ ଚାରିଟା କେରାଣ୍ଡୀ ଛୋଟ ପୋହଳା ଧରି କେଦାର ପୁଅ ଗୁଲୁ ସାଙ୍ଗରେ ଫେରେ । ସେଥିରେ ତାର କି ଖୁସି । କିନ୍ତୁ ପ୍ରମୋଦକୁ ଗାଁ ଏତେଟା ଭଲ ଲାଗେନି । ସେ ଘର କଣରେ ବହି ଖଣ୍ଡେ କିମ୍ବା ରେଡ଼ିଓଟେ ଧରି ବସେ । ସଂଧ୍ୟାରେ ଟିକେ ଠାକୁର ଆଳତି ଦେଖି ଯାଏ । କାହା ସହିତ ପ୍ରମୋଦ ପରି ଏତେଟା ମିଶି ପାରେନି । ମାଧୁରୀ ତ ଛୋଟଟେ ଥାଏ ସାତ ଆଠ ବର୍ଷର । ଗାଁ ଝିଅଙ୍କୁ ଦେଖି ଫ୍ରକ୍ ରଖିଦେଇ ସୁରମାଙ୍କ ଶାଢ଼ୀ ଖଣ୍ଡେ ପିନ୍ଧି ଗାଁ ଯାକ ବୁଲିଆସେ । କିଏ ମାଉସୀ କି ଏ ମାଇଁ, ଖୁଡ଼ୀ ସମସ୍ତେ ତାଙ୍କୁ ଖୁସି ପାନ୍ତି । ଆଦର କରନ୍ତି । କେତେଦିନ ଗାଁରେ ରହନ୍ତି । ୧୦/୧୫ ଦିନ । ତା ପରେ ସ୍କୁଲ ଖୋଲିବା ସମୟ ହୋଇଯାଏ । ସମସ୍ତେ ଫେରନ୍ତି ।

ସୁରମା ଦେବୀ ମନ ସ୍ଥିର କରି ନେଲେ । କଥା ହେଲା ସେ ଆଗ ଯିବେ । ଗାଁର ପରିସ୍ଥିତି ଘରଦ୍ୱାର ସବୁ ଦେଖାଦେଖି କରି ଖବର ଦେଲେ ଗୋବିନ୍ଦ ବାବୁଙ୍କୁ ନେଇ ପ୍ରମୋଦ ଛାଡ଼ି ଆସିବ । ସୁରମା ଦେବୀ ମନେ ମନେ ବେଶ୍ ଅସନ୍ତୁଷ୍ଟ କିନ୍ତୁ ସ୍ୱାମୀଙ୍କୁ ତାଙ୍କ ସହ ଯିବାକୁ ବାଧ୍ୟ କଲା ଭିତରେ ତାଙ୍କ ଯିବା ଯଦି ବନ୍ଦ ହୁଏ ତାଙ୍କର ସେଇ ଡ଼ର । ସୁବୋଧ ଓ ଶ୍ୟାମଳୀକୁ



ସେ ତାଙ୍କ ଯିବା କଥା ଜଣାଉଛନ୍ତି । ବାପା ପରେ ଯିବେ ମଧ୍ୟ କହିଛନ୍ତି । ଶ୍ୟାମଳୀ ସୁବୋଧ ବିଶେଷ ଆପତ୍ତି ନାହିଁ । କିନ୍ତୁ ତାଙ୍କ ବାପାଙ୍କ କଥା ପଡ଼ିବ ପରେ ଶ୍ୟାମଳୀ କହିଥିଲା - ଆପଣ କିଛି ଦିନ ବୁଲି ଆସନ୍ତୁ । କିନ୍ତୁ ବାପା ଯିବା କ'ଣ ନିହାତି ଦରକାର ? ଗୋବିନ୍ଦ ବାବୁଙ୍କ ନ ଯିବାର କାରଣ ସେ କିଛିଟା ଅନୁମାନ କରି ପାରିଛନ୍ତି । ସ୍ୱାମୀ ସ୍ତ୍ରୀ ଅଫିସ୍ ଗଲାପରେ ଘରେ ନିଜ ପକ୍ଷର ଜଣେ ଲୋକ ଥିଲେ ଭଲ । ପିଲାଙ୍କ ଆୟା ଓ ରୋଷେୟାର କିଛିଟା ଭୟ ରହିବ । କାମଦାମକୁ ହେଳା କରି ଦୁହେଁ ଗପସପରେ ମାତିବେ ନାହିଁ । ସୁରମା ଦେବୀ ଆଉ କିଛି ପ୍ରତିବାଦ ନକରି ତାଙ୍କ ସୁଟ୍‌କେଶ ଖଣ୍ଡିକ ଧରି ବାହାରି ପଡ଼ିଲେ । ଆଗରୁ ସେ ସୁଦାମକୁ ଫୋନ୍ କରି ଡ଼କାଇଥିଲେ । ସେ ତାଙ୍କୁ ନବାକୁ ଆସି ପହଞ୍ଚିଗଲା । ତେଣୁ ସେ ଭାରି ଖୁସି ହେଇ ବାହାରିଲେ ସତ କିନ୍ତୁ ଗଲାବେଳେ ବଡ଼ ଗମ୍ଭୀର ଗୋବିନ୍ଦ ବାବୁଙ୍କୁ କହିଥିଲେ ମୁଁ ଯାଉଛି ତମ ଦେହପା ଦେଖି ଚଳିବ । ଔଷଧ ପତ୍ର ଠିକ୍ ଟାଇମ୍‌ରେ ଖାଇବ । ତମେ ଅସୁସ୍ଥ ହେଲେ ମୁଁ ଆଉ ଏଠାକୁ ଆସି ତମ ସେବା କରିପାରିବି ନାହିଁ । ମୋର ବଡ଼ ବୟସ ହେଲାଣି । ଗୋବିନ୍ଦ ବାବୁ ଅଭିମାନରେ ଆଉ କିଛି କହିଲେ ନାହିଁ ।

ବସରେ ତାଙ୍କ ଗାଁକୁ ଆସିବାକୁ ଦୁଇ ଘଣ୍ଟାର ବାଟ । ମୁହଁ ସଂଜବେଳେ ସୁଦାମ ସହିତ ସୁରମା ଦେବି ବସ୍‌ଷ୍ଟାଣ୍ଡରେ ପହଞ୍ଚିଗଲେ । ଅଟୋ ଖଣ୍ଡେ ଧରି ଘର ଦୁଆର ମୁହଁରେ ପହଞ୍ଚିଗଲା ବେଳକୁ ପୂଜାରି ଆସି ଠାକୁରଙ୍କ ଆଳତୀ କରୁଥାଏ । ସୁରମା ଦେବି ଗୋଡ଼ ଧୋଇ ପକାଇ ରାଧାକୃଷ୍ଣଙ୍କୁ ଦର୍ଶନ କଲେ । ପାଦୁକ ପାଇଲେ । କେଦାର ଆଗରୁ ଖବର ପାଇ ଘରଦ୍ୱାର ସବୁ ପରିଷ୍କାର କରି ରଖିଥିଲା । ସୁରମା ଦେବିଙ୍କୁ ଦେଖି ତା ସ୍ତ୍ରୀ ଭାମା ଓ ପୁଅ ମନୁଆ ଦଉଡ଼ି ଆସିଲେ । ଦୁହେଁ ସୁରମା ଦେବୀଙ୍କୁ ପ୍ରଣାମ କରି କହିଲେ - ମାଆ କେତେ ବର୍ଷ ପରେ ଆସିଲ ? ଗାଁ କଥା ଆମ କଥା କ'ଣ ପୁରା ଭୁଲିଗଲ ? ଏଉଠି ରୁହ ଏଥର । ଆମେତ ଅଛୁ ସବୁ କରିଦବୁ । ବାବୁ ଆସିଲେ ନାହିଁ କାହିଁକି ? ତମେ କ'ଣ ଆଠ ଦଶଦିନ ରହି ପଳେଇବ ନାଁ କ'ଣ ? ଆମେ ଆଉ ଛାଡ଼ିବୁ ନାହିଁ । ଏ ଭିତରେ ସୁଦାମ ତାଙ୍କ ଜିନିଷପତ୍ର ନେଇ ଶୋଇବା ଘରେ ରଖି ଦେଇଥିଲେ ।

ଏ ଘରୁ ସେ ଘର ବୁଲାବୁଲି କରି ସୁରମା ଦେବୀ ବି ସୁଦାମ ଖାଇ ବସିଲେ । ନାନା ପ୍ରକାର ତୃଣ ତରକାରୀ କରିଥାଏ ସୁଦାମ ସ୍ତ୍ରୀ । ପାଖରେ ବସି ଏଟା ଖାଅ ସେଟା ଖାଅ କହୁଥାଏ । ସୁରମା ଦେବୀଙ୍କ ଘରକୁ ଆସିଲା ବେଳକୁ ଭାମାର ଘରି ପାଞ୍ଚ ବର୍ଷର ପୁଅ ହେଉଥିଲା । ଏବେ ପିଲାଟି ତେର ଚଉଦ ବର୍ଷର ହେଲାଣି । ଗାଁ ସ୍କୁଲରେ ସପ୍ତମ ଶ୍ରେଣୀରେ ପଢୁଛି । କେଡ଼େ ସୁନ୍ଦରଟିଏ ହେଉଛି । ଗ୍ଲାକ ଚତୁର ଜଣା ପଡ଼ିଲା । ତାଙ୍କ ଖିଆ ପିଆ ସରିବା ବେଳକୁ ସେ ସୁରମା ଦେବୀଙ୍କ ବିଛଣା ସଜାଡ଼ି ଦେଇଥିଲା । ସୁଦାମ ଅନ୍ୟ ଘରେ ଶୋଇଲା ।



ତା ପରଦିନ ସକାଳୁ ସୁରମା ଦେବୀ ନିତ୍ୟକର୍ମସାରି ଋହା କପେ ପିଇ ଘରଦୁଆର ବୁଲି ଦେଖିଲେ । ମଝି ଘର କାନ୍ଥରେ ତାଙ୍କ ଶାଶୁ ଶଶୁରଙ୍କ ପଟ । ତା ପାଖକୁ ଲାଗି ଗୋଟେ ଫଟରେ ଗୋବିନ୍ଦବାବୁ, ସୁରମାଙ୍କ ସହିତ ପ୍ରମୋଦ ଓ ସୁବୋଧ ମାଧୁରୀ କେଡ଼େ ଛୋଟଟିଏ ହେଉଛି । କେବେ କାଳର ଫଟ । କେତେବର୍ଷ ଗଡ଼ି ଗଲାଣି ଏ ଭିତରେ । ଦୁହେଁ ଆସି ବୁଢ଼ାବୁଢ଼ି ହେଲାଣି । ଭଗବାନଙ୍କ କୃପାରୁ ଆଜି ଯାଏ ଅନ୍ତତଃ ହାତ ଗୋଡ଼ ଋଲୁଛି । ପୁରୁଣା ଫଟ ସବୁ । ସମୟ ସୁଅରେ ରାଗ ସବୁ ଫିକା ପଡ଼ି ଆସିଲାଣି । ପ୍ରଥମ ବର୍ଷ ପ୍ରମୋସନ ପାଇ ଗୋବିନ୍ଦ ବାବୁ ଗୋଟେ କାମେରା ଆଉ ଗୋଟିଏ ରେଡ଼ିଓ କିଣିଥିଲେ । ଶଶୁରଙ୍କୁ ଆଣି ରେଡ଼ିଓଟି ଦେଇ କହିଥିଲେ - ଭଜନ କୀର୍ତ୍ତନ ଆଦି ଶୁଣିବେ । ସୁରମା ଦେବୀ କେଉଁ କେତେଦିନ ଗାଁରେ ରହନ୍ତି ରେଡ଼ିଓଟି ଖୋଲି ଶୁଣନ୍ତି । ଆଉ ଗୋଟେ ଛୋଟ ଆଲବମ୍ ଥିଲା । ପିଲାମାନଙ୍କର ତାଙ୍କର ଶାଶୁ, ଶଶୁରଙ୍କର ପିଲାଦିନର ଫଟୋ । କେଉଁଠି କେଜାଣି କେଉଁ ବାକ୍ସରେ ପଡ଼ିଥିବ । ତାକୁ ଖୋଲି ଦେଖିବାକୁ ଆଉ କେବେ ସେ ସମୟ ପାଇ ନାହାନ୍ତି ।

ପିଲା ବଡ଼ ହେଲେ, ଋକିରୀ ବାକିରୀ କରି ବାହାସାହା ହେଲେ । ଯେ ଯାହା ସଂସାର ନେଇ ରହିଲେ । ମାଧୁରୀର ବାହାଘର ନହେବା ଯାଏ ଗୋଟେ ପ୍ରକାର ଋଲିଥିଲା । କଲେଜରୁ ଫେରି ବୋଉ ପାଖରେ ବସି ଗପସପ କରିବା, ବାପାଙ୍କୁ ଔଷଧପତ୍ର ଦବା ସବୁ ତା କାମ ଭିତରେ ଥିଲା । କିନ୍ତୁ ସେ ଋଲିଗଲା ପରେ ସୁରମା ଦେବି ଯେମିତି ଏକୁଟିଆ ହୋଇଗଲା । ପରିବାର ଭିତରେ ଥାଇ ମଧ୍ୟ ସେ ନିଜକୁ ଅସହାୟ ମଣିଲେ । ଶ୍ୟାମଳୀ ପ୍ରାୟ ତା ସଂସାର ତା ପିଲାଙ୍କୁ ନେଇ ବ୍ୟସ୍ତ ରହେ । ସେଥିରେ ସୁରମାଙ୍କର କିଛି ଦୋଷ ନାହିଁ । କିନ୍ତୁ କି କାରଣ ଥାଇ କୌଣସି ସୁବୋଧ ଓ ତାର ଅନେକ ସମୟରେ ପାଟିତୁଣ୍ଡ ହୁଏ । ରାଗ ରୋଷ ଋଲେ । ସେ ସବୁର କାରଣ ସୁରମା ଦେବି ବୁଝିପାରନ୍ତି ନାହିଁ ସତ କିନ୍ତୁ ଏଭଳି ପରିବେଶକୁ ସେ ସହି ପାରନ୍ତି ନାହିଁ । ସେ ଭାବନ୍ତି ତାଙ୍କ ସଂସାରରୁ ଦୂରେଇ ରହିଲେ ଏ ସବୁ ସେ ଦେଖି ପାରିବେ ନାହିଁ । ସେଇଥିପାଇଁ କେବଳ ସେ ଗୋବିନ୍ଦ ବାବୁଙ୍କୁ ଗାଁକୁ ଫେରିବାକୁ ଲଗାଉ ଥିଲେ ।

କେତେ ଅଭାବ ଅସୁବିଧା ଭିତରେ ସେ ଚଳିଛନ୍ତି । ଦଶମା ଗଣ୍ଡାକ ଛାଡ଼ି ଦେଲେ ତାଙ୍କର ଆଉ କିଛି ଭରସା ନଥିଲା । ଶାଶୁ ଶଶୁର ଥିବା ତକ ଋଉଳ, ଡ଼ାଲି ଆଦି କିଛି କିଛି ପଠାଇଥିଲେ । ସେ ଗଲାପରେ ମାଧୁରୀ ବାହାଘର ବେଳେ ବେଶ୍‌କରି ଜମି ବିକ୍ରି ହେଲା । ଆଉ କେତେ ଅଛି କ'ଣ ଅଛି କେଦାର ବୁଝେ, କିନ୍ତୁ ଗାଁକୁ ଆସିଲା ପରେ ତାକୁ କେମିତି ନିଶ୍ଚିନ୍ତ ଲାଗୁଛି । ଭରସା ଲାଗୁଛି, ଏଇସବୁ କଥା ଭାବି ବସିଲାବେଳେ ସୁଦାମ ଆସି କହିଲା - ମାଙ୍କ ଆଜି ମୁଁ ଯାଉଛି । ସ୍କୁଲ ଖୋଲି ଗଲାଣି । ବାପାଙ୍କୁ କହିବି ଆସି ବୁଲି ଯିବେ । ମୁଁ ପୁଣି ରବିବାର ଆସିବି । କେଦାର ତା ସ୍ତ୍ରୀ ଅଛନ୍ତି ସବୁ କରି ଦେବେ । ତମର କିଛି ଅସୁବିଧା ହବନି । ତମ ଗାଁରେ ଡ଼ାକ୍ତରଖାନାଠୁଁ ଆରମ୍ଭ କରି ହାଇସ୍କୁଲ ବି ହେଇ ଗଲାଣି । ତମ ଗାଁ ଆଉ ଗାଁ ଭଳି ନାହିଁ ।



ସୁରମା ଦେବି ତାଙ୍କ ବ୍ୟାଗରୁ ପାଞ୍ଚଶହ ଟଙ୍କା ନୋଟ୍ ଖଣ୍ଡେ କାଢ଼ି ଜୋର୍‌କରି ‹ ହାତରେ ଗୁଂଜି କହିଲେ ଭୁବନେଶ୍ୱରରୁ ତ କିଛି ଆଣି ପାରିଲିନି । ତୋ ବାପାଙ୍କ ପାଇଁ ମି‹ କିଣି ନବୁ । କହିବୁ ମୁଁ ପଠାଇଛି । ସୁବିଧା କରି ଆସିବେ । ଦୁଇ ଚାରିଦିନ ରହିଯିବେ । ସୁଦା‹ ଗଲାପରେ ସୁରମା ଦେବି ଗାଧୋଇ ପଡ଼ିଲେ । ତାଙ୍କ ଗାଧୁଆ ପୂଜାପୂଜି ସରିଲା ବେଳ‹ କେଦାର ସ୍ତ୍ରୀ ଜଳଖିଆ ଆଣି ଦେଲା । ପଚାରିଲା ମାଆ କ'ଣ ତରକାରୀ କରିବି ? ମାଛ ପା‹ ଜାଇଛନ୍ତି । ସୁରମା ଦେବୀ କହିଲେ ମୋ ପାଇଁ ଏକା କ'ଣ କରିବୁ ବରଂ ଏକାଠି ରାନ୍ଧିଦେ ତମେ ସବୁ ଆଉ ମୁଁ ଖାଇଦବ । ମୋ ରନ୍ଧା ସାରି ପୁଣି କ'ଣ ତମର ରାନ୍ଧିବୁ । ମୁଁ ଯାହା କରି‹ ଖାଉ ଦେବି । ଯାଉଛି ଗାଁ ଆଡ଼େ ଟିକେ ବୁଲି ଆସେ । କେଦାର ସ୍ତ୍ରୀ କହିଲା - ମନୁ ତ‹ ସାଙ୍ଗରେ ଯିବିକି ? ଗାଁ କେତେ ବଦଳି ଗଲାଣି । ସବୁତ ସହରିଆ ହେଇ ଗଲେଣି । କି‹ ତମକଥା ସମସ୍ତେ ପଚାରନ୍ତି । ସବୁଠୁ ବେଶୀ ପଚାରନ୍ତି ମଧୁଦାଦିଙ୍କ ସ୍ତ୍ରୀ ମଳିଖୁଡ଼ୀ । ତାଙ୍କ ଘରଡ଼ି ଅଡ଼ବାଟ ଆଗ ତାଙ୍କରି ଘରକୁ ଯାଅ, ମନୁ ସାଙ୍ଗରେ ଯାଉ, ପହଞ୍ଚାଇ ଆସିବ ।

ନା ନା ମନୁ ସ୍କୁଲ ଯାଉ । ଗାଁରେ ନରହିଲେବି ମୁଁ କ'ଣ ବାଟ ଭୁଲି ଯିବି । ତୁ ମୋ ପାଇଁ ବେସ୍ତ ହବୁ ନାହିଁ । ମୁଁ ଠିକ୍ ସମୟରେ ପହଞ୍ଚିଯିବି । ସୁରମା ଦେବୀ ଆଗ ମଧୁସୁଦନଙ୍କ ଘରେ ପହଞ୍ଚିଲେ । ମଧୁମହାନ୍ତି ଗାଁରେ ପୋଷ୍ଟମାଷ୍ଟର ଥିଲେ । ଗୋବିନ୍ଦବାବୁଙ୍କ ସମସାମୟିକ କିନ୍ତୁ ସମ୍ପର୍କରେ ଦାଦା ହେବେ । ସୁରମା ଦେବୀ ଓ ମଳି ବାହାଘର ପାଖାପାଖି ମାସେ ଦୁଇ ମାସ ଅନ୍ତରରେ । ମଳି ବାହାହେଇ ଆସିବା ପରେ ଦୁହେଁ ବହୁତ ସାଙ୍ଗ ହେଇଯାଉଥିଲେ । ଯେ ଯାହାର କାମସାରି ଏକାଠି ବସି ଘଣ୍ଟାଘଣ୍ଟାଧରି ଗପସପ କରନ୍ତି । ସୁରମା ଦେବୀଙ୍କ ଶାଶୁ ମଧ୍ୟ ମଳିକୁ ବଡ଼ ସ୍ନେହ କରନ୍ତି । ଗାଁ ଯାକରେ ସମସ୍ତେ ପ୍ରାୟ ସମସ୍ତଙ୍କର ଆପଣାର ପରି ଲାଗନ୍ତି । କିନ୍ତୁ ମଳିକୁ ତାଙ୍କର ସବୁଠୁ ପ୍ରିୟ ଥିଲା । ରୂପ ଯେମିତି ସୁନ୍ଦର ଗୁଣ ମଧ୍ୟ ସେଇଭଳି । ତା ସହିତ ସୁରମା ଦେବୀ କେତେ ଗପସପ ସୁଖ, ଦୁଃଖ ହୁଅନ୍ତି । ଖରାବେଳଟା ପରସ୍ପରଙ୍କ ଘରେ କଟେ । ମଳିକୁ ଥରେ ଗୁହାଳ ଘର ଦୁଆର ପାଖେ ସାପ କାମୁଡ଼ିଲା । ସେ ଯେଉଁ ଅବସ୍ଥା ଡ଼ାକ୍ତର ଖାନା ନନେଇ ଗୁଣିଆ ଖୋଜା ଚାଲିଥିଲା । ଗୋବିନ୍ଦ ବାବୁ ସେଇ ସମୟରେ ଗାଁରେ ଥିଲେ । ମଧୁଦାଦାଙ୍କୁ ଗାଳି ଦେଇ ପାଟି ତୁଣ୍ଡ କରି ସାଳେପୁର ଡ଼ାକ୍ତରଖାନା ନେଲେ । ଦୁଇଦିନ ଡ଼ାକ୍ତର ଖାନାରେ ରହି ଫେରିଥିଲେ । ସୁରମା ଦେବୀଙ୍କର ସାନ ପୁଅ ପ୍ରମୋଦ ସାଙ୍ଗରେ ମଳିର ଗୋଟିଏ ଝିଅ । ସବୁବେଳେ କହେ ମୋ ଝିଅକୁ ତୁ ବହୁ କରିବୁ । ଶୁଣିଥିଲେ ତାର ସେଇ ବଡ଼ ଝିଅଟି କେନ୍ଦ୍ରାପଡ଼ାରେ ଅଛି । ଜଣେ ଡ଼ାକ୍ତରଙ୍କୁ ବାହା ହେଇଛି । ତା ପରେ ପୁଅଟିଏ ମାଧୁରୀ ସାଙ୍ଗରେ ସେ ପୁଅଟି ଅଛି ଆମେରିକାରେ । ପାଞ୍ଚଛଅ ବର୍ଷ ହେଲା ଆଉ କେହି କାହା ଖବର ରଖି ନାହାଁନ୍ତି । ବୟସ ହେଲାପରେ ଯେ ଯାହାର ଦେହପା ସଂସାର ନେଇ ବ୍ୟସ୍ତ ।

ଏଇ ସବୁ କଥା ମନେ ପକାଉ ପକାଉ ସୁରମା ଦେବୀ ମଧୁଦାଦା ଘର ବରଣ୍ଡାକୁ ଉଠିଗଲେ । ଦୁଆର ଆଉଜା ଥିଲା । ଭିତରକୁ ଯାଇ ଦେଖିଲେ କେହି କୁଆଡ଼େ ନାହାଁନ୍ତି ।



ମାନ୍ୟରେ ଯଦିଓ ମଳି ଖୁଡ଼ୀ ହବ ତାଙ୍କଠୁଁ ତିନିଋରିବର୍ଷ ସାନ ପୁଣି ସାଙ୍ଗ । ସୁରମା ଦେବୀ ତାକୁ ନାଁ ଧରି ଡ଼ାକନ୍ତି । କାହାକୁ ନଦେଖି ପାଟିକରି ମଳି, ମଳି ଡ଼ାକିଲେ । ଶୋଇବା ଘରୁ ଦଶ ବାରବର୍ଷର ଝିଅଟିଏ ବାହାରି ଆସିଲା । ଫ୍ରକ୍ ଖଣ୍ଡେ ପିନ୍ଧିଛି । ଗୋରା ତକ ତକ, ବଡ଼ ବଡ଼ ଆଖି । ଠିକ୍ ମଳିପରି ବେହେରା । ଅନୁମାନ କଲେ ମଳିର ନାତୁଣୀ ହେଇଥିବ । ପଋରିଲେ ତୁ କିଏ ତୋ ନାଁ କ'ଣ ? କହିଲା ମୋ ନାଁ ପରେ କହିବି । ଆପଣ ଆଈର ସାଙ୍ଗ କି ? ଆଈ କାଲି କହୁଥିଲା । ତମେ ଆସିଛ ବୋଲି, ତାକୁ ଦେଖା କରିବାକୁ ନିଶ୍ଚୟ ଆସିବ । ଆସ, ଏଇଠି ଖଟ ଉପରେ ବସ ଆଉ କାମ ସାରି ନଈକୁ ଗାଧୋଇ ଯାଉଛି । ଅଜା ତାଙ୍କ କାମରେ କେନ୍ଦ୍ରାପଡ଼ା ଯାଇଛନ୍ତି । ମୁଁ ଦଉଡ଼ି ଯାଉଛି ଆଇକୁ ଡ଼ାକି ଦେବି । ନହେଲେ ଡ଼େିର କରିବ, ଯୁଆଡ଼େ ଗଲେ ଗପିବ ପରା । ସୁରମା ଦେବୀ ହସିଲେ, ଆଛା ତୁ ମୋ ପାଖରେ ବସ, ତୋ ଆଈ ଆସୁ । ତୋ ସାଙ୍ଗରେ ଗପ କରୁଥାଏ । ହଁ  ତୋ ନାଁଟା କ'ଣ କହିଲୁ; କ'ଣ ପଢୁଛୁ, ଝିଅଟି କହିଲା – ମୋ ନାଁ ଅପରାଜିତା ଡ଼ାକନ୍ତି ଜିତା, ମୁଁ ଅଷ୍ଟମ ଶ୍ରେଣୀରେ ପଢ଼େ । ମୋ ବାପା ବୋଉ କେନ୍ଦ୍ରାପଡ଼ାରେ ଥାନ୍ତି, ଡ଼ାକ୍ତର । ତମେ ଆଈ ମୋ ବୋଉକୁ ଜାଣିଥିବ ମଁ  ଶାନ୍ତି  । ତମ ସାଙ୍ଗ ମଳି  ଦେବୀଙ୍କ ବଡ଼ଝିଅ । ଝିଅଟି କଥା ଶୁଣି  ସୁରମା ଦେବୀ ତା ପିଠି ଚାପୁଡ଼େଇ ହସିଲେ । କହିଲେ ତୁ ତ ଆଈ ପରି କଥାକୁହା କଣ୍ଢେଇଟିଏ ହେଇଛୁ ?

ଏତିକିବେଳେ ମଳି ମାଠିଆରେ ପାଣିଧରି ଦୁଆର ପାଖରୁ ପାଟିକଲା – ଏଅପୂର୍ବ କୁଆଡୁ ମଁ! ଭାମା ମତେ କହୁଥିଲା – ଏଇ ଦିନେ ଦୁଇଦିନ ଭିତରେ ଆସିବୁ । ହଁ ଜିତା ତ ଦୁଆର ଅଟେ । ଦେଖି ମତେ ଯଣାଉଥିଲା, ଗରାଟା ତଳେ ଥୋଇ ମଲ୍ଲି ଆସି ସୁରମାଙ୍କୁ କୁଣ୍ଢାଇ ପକାଇଲା । କହିଲା – ତୁ ତ ସେମିତି ଅଛୁ – ମୁଁ ବୁଢ଼ି ହେଇଗଲିଣି । କେତେ ବର୍ଷ ହେଲାଣି କହିଲୁ । ମାଧୁରୀ ବାହାଘରରେ ଦେଖା । ପାଞ୍ଚ ଛଅବର୍ଷ ନୁହେଁକି ? ତା ପରେ ଆଉ ତ ତୁ ଗାଁକୁ ଆସିନାହୁଁ, ସୁରମା ଦେବୀ କହିଲେ ଏମିତି ଠିଆ କରାଇ କ'ଣ ଗପ କରୁଥିବୁ ? ଲୁଗା ବଦଳାଇ ଆ । ମୁଁ କ'ଣ ପଳଉଛି, ମୁଁ ପ୍ରତିଜ୍ଞା କରି ଆସିଛି ଏଥର ଗାଁରେ ରହିବି । ତୁ ଯା, ତୋ କାମ ସାର ।

ମଲ୍ଲି ଓ ସୁରମା ଦେବୀ ବହୁତ ସମୟ ଗପ କଲେ, ମଳି ତା ପୁଅ ପାଇଁ ବ୍ୟସ୍ତ ହେଲା । ଗୋଟିଏ ପୁଅ । ଭଲ ଋକିରୀ କିନ୍ତୁ ବାହାହବା ନାଁ ଧରୁନାହିଁ । ଫୋନ କରୁଛି ପଇସା ପତ୍ର ବି ତା ବାପାକୁ ପଠାଉଛି । ନିଜେ କେଉଁଠି ଠିକ୍ କରିଛି କି ବୋଲି ଜାଣିଲେବି ଆମେ ବାହାଘର କରିଦିଅନ୍ତୁ । ତା ବି ନୁହଁ କହୁଛି । ସେଥିପାଇଁ ତା ବାପା ମନକଷ୍ଟ, ସୁରମା ଦେବୀ କହିଲେ ମିଛରେ ତମେ ଏତେ ଚିନ୍ତା କରୁଛ କାହିଁକି ? ପିଲା ବଡ଼ ହେଲେଣି, ତାଙ୍କ ଭଲମନ୍ଦ ସେମାନେ ନିଜେ ବୁଝିବେ । ଆମେ କେହି ଆଉ କିଛି କରି ପାରିବା ନାହିଁ । ତାଙ୍କ କାନ ଆଉ ଆମ ହାତ ପାହାନ୍ତାରେ ନାହିଁ ।



ମଲ୍ଲି ପାଖରେ ଦୁଇ ଚାରି ଘଣ୍ଟା ବସି ସୁରମା ଦେବୀ ଉଠିଲେ, କହିଲେ ସଂଜ ବେଳକୁ ଆ ମୁଁ ତ ଅଛି । ବେଳ ହେଲାଣି, ଭାମା ମତେ ଅନେଇଥିବ । ତୋରି ପାଖରେ ଏତେ ବେଳ ହେଲା ଆଉ କୁଆଡ଼େ ଯାଇ ହବନି । ଶୁକ, ଫକୀର, ବୃନ୍ଦାବନ ଘରଆଡ଼େ ପରେ ଯିବି । ସତକୁ ସତ ଡେରି ଦେଖି ଭାମା ଡ଼ାକିବାକୁ ବାହରୁଥିଲା, ସୁରମା ଦେବୀ କହିଲେ – ମୋ ଖାଇବା ବାଢ଼ିଦେ ମୁଁ ଲୁଗା ବଦଳାଇ ଆସୁଛି । ମନୁଆ ଖାଇଲାଣି; ଭାମା କହିଲା ସେ ଖାଇ ସ୍କୁଲ୍ ଚାଲାଣି । ତା ବାପା ବିଲ ଆଡ଼େ ଯାଇଛନ୍ତି । ମୁଁ ତମ ପାଇଁ ବାଢୁଛି ଆସ । ଭାମା ଜାଣେ ମାଆ ତଳେ ବସି ଖାଇ ପାରନ୍ତି ନାହିଁ । ତେଣୁ ଗୋଟେ ଟେବୁଲ ଓ ଚେୟାର ଦୁଇଟା ପକାଇ ପରିଷ୍କାର କରି ରଖିଛି । କେଦାର ତାକୁ ସବୁ ବୁଝାଇ ଯାଇଛି ବୋଧେ । ତା ଛଡ଼ା ମାଧୁରୀ ବାହାଘରକୁ କାମ ଦାମ ସୁବିଧା ପାଇଁ କେଦାର ସହିତ ସେ ବି ଯାଉଥିଲା ଚରିପାଞ୍ଚ ଦିନ ରହିଥିଲା । ସୁରମା ଦେବୀ ଯାଣନ୍ତି ଶ୍ୟାମଳୀ ମନେ ମନେ ବିରକ୍ତ । ଗାଉଁଲି ଲୋକ, ସହର ବଜାର ଚଳଣି ଏତେଟା ଯାଣନ୍ତି ନାହିଁ । କିନ୍ତୁ ସେ ଲକ୍ଷ୍ୟ କରିଥାଆନ୍ତି । ଭାମା ସେ ଦିଗରୁ ବେଶ୍ ହୁସିଆର୍ । କାହା ସହିତ କିଭଳି ବ୍ୟବହାର କଥାବାର୍ତ୍ତା କରିବାକୁ ହୁଏ ସେ ଜାଣେ ବୁଝେ । ତିନି ଚାରିଦିନ ପରେ ସେ ଗାଁକୁ ବାହାରି ଥିଲା । ମାଧୁରୀ ସିଘ୍ର ବିଦା ହେଇଗଲା କିନ୍ତୁ ଘର ଯାକର ବହୁତ କାମ ଥାଏ । ତାର ଇଚ୍ଛା ତୁଳସୀ ଓ ଜଗୁ କରିଦବ ସବୁ । ଅଯଥା ଆଉ ଦୁଇଟା ଲୋକ ରହିବା ଦରକାର ନାହିଁ । ସୁରମା ଦେବୀ ବୁଝନ୍ତି ଯାଣନ୍ତି ସବୁ । କିନ୍ତୁ ପାଟିତୁଣ୍ଡ ମୁହଁଫୁଲାକୁ ସେ ପସନ୍ଦ କରନ୍ତି ନାହିଁ । ଅଯଥା ଅଶାନ୍ତି ବଢ଼ିବ । ଆଜି ଖାଇବା ଟେବୁଲ୍‌ରେ ବସି ତାଙ୍କର ସେଇସବୁ କଥା ମନେ ପଡ଼ିଲା । ଗୋବିନ୍ଦ ବାବୁ ଆସିଥିଲେ ତାଙ୍କୁ ଆହୁରି ଭଲ ଲାଗିଥାନ୍ତା, ଯେଉଁ ସଂସାରରେ ଆମର ଆଉ ଆବଶ୍ୟକ ନାହିଁ ସେଠି ମାଡ଼ି ଗୁଞ୍ଜି ହୋଇ ପଶିବାକୁ ସୁରମା ଦେବୀଙ୍କୁ ଅସହ୍ୟ ଲାଗୁଥିଲା । ଯାହାର କିଛି ଆଶ୍ରୟସ୍ଥଳ ନାହିଁ ସେ ଅଲଗା, କିନ୍ତୁ ସେ କିଛି ବୁଝିପାରନ୍ତି ନାହିଁ । ଭାମା କଥାରେ ତାଙ୍କ ଭାବନା ଫେରି ଆସିଲା । ସେ କହିଲା ମାଆ ଆଉଟିକେ ଡ଼ାଲି ତରକାରୀ ଦିଏ । ଭଲ କରି ଖାଅ, ଭାତ ତରକାରୀ ଭଲ ହୋଇଛି ତ ? ତମ ସହରୀ ରନ୍ଧା ଅଲଗା ହେଉଥିବ । ପାଟିକୁ ସୁଆଦ ଲାଗୁଛିତ ? ନହେଲେ ଆସିଲେ ମତେ ପୁଣି ରାଗ ହେବେ । କହିବେ ଏ ଗୁଡ଼ା କ'ଣ ରାନ୍ଧିଛି । ସୁରମା ଟିକେ ଅଟକି ଗଲେ, କହିଲେ ଭାମା ବୁଝିଲୁ ସ୍ନେହ ଆଦର ଯେଉଁଠି ଥାଏ ସେଠି ସବୁ ଅଭାବ ଅସୁବିଧା ଜଣା ପଡ଼େ ନାହିଁ । ଗାଁକୁ ସହର କହ ସବୁ ମଣିଷ ମନରେ ଖେଳ । ତୁ କେତେ ଆଦର ଯତ୍ନରେ ମତେ ଗଣ୍ଡେ ଖାଇବାକୁ ଦେଲୁ ମୋ ପାଖରେ ଜଗି ବସିଛୁ ତାଠୁ ବଡ଼ ଖୁସି ଆନନ୍ଦ କ'ଣ ସୁଆଦ ଅସୁଆଦରେ ଅଛି ?

ସୁରମା ଦେବୀ ଖାଇ ସାରି ଉଠି ଗଲେ । ହାତ ଧୋଉ ଧୋଉ ଭାମା ଖଣ୍ଡେ ପାନ ଆଣି ତାଙ୍କୁ ବଢ଼ାଇ ଦେଲେ, କହିଲା ତମ ଆସିବା ଖବର ପାଇ ମନୁଆ ବାପା ସବୁ ଯୋଗାଡ଼ କରି ରଖିଥିଲେ । ମାଆ ତମର ଦୟାରେ ଆମେ ପଡ଼ିଛୁ । ତାଙ୍କ ଗାଁରେ ତ ଆଉ କିଛି ନାହିଁ । ତମ



ବିଲବାଡ଼ି କାମ ସାରି ଗାଁର ଆଉ ଭଲ ଘରି ଜଣଙ୍କ କାମବି କରନ୍ତି । ମିନୁଆ ସ୍କୁଲରେ ପଢୁଛି ତା ବହିପତ୍ର ଦରମା ଆଦି ସେଇ ଖର୍ଚ୍ଚରେ ଚଳିଯା, । ଗୋଟେ ତ ପିଲା, ପାଠ ଦିକ୍ଷର ନପଢ଼ିଲେ କ'ଣ କରିବ? ଟିକେ ବଡ଼ ହେଇଯାଉ ବାବୁଙ୍କୁ କହି - ସୁରମା କହିଲେ ନାଁ ତୁ ବ୍ୟସ୍ତ ହୁଅ ନାହିଁ । ସେ ପଢୁଛି ପଢୁ, ଘର ଖର୍ଚ୍ଚ ପତ୍ର କଥା ମୁଁ ବୁଝିବି । ଏଥର ମୁଁ ଗାଁରେ ରହିବି ଭାବିଛି । ଦେଖା ଯାଉ କ'ଣ ହଉଛି । ମୁଁ ଯାଉଛି ଟିକେ ଗଡ଼ପଡ଼ ହେବି । କେଦାର ଆସିଲେ ତମେ ଖାଇ ଦେବ ।

ସୁରମା ତାଙ୍କର ପୁରୁଣା ଶୋଇବା ଘରକୁ ଗଲେ, କେଉଁକାଳର ପୁରୁଣା ପଲଙ୍କ, ତାଙ୍କ ଶାଶୁଙ୍କ ଅମଳର, କିନ୍ତୁ ଶକ୍ତ ମଜବୁତ ଅଛି । ନୂଆବାହା ହେଉ ସେ ଆସିଲା ପରେ ଏଇ ଘରେ ଏଇ ପଲଙ୍କରେ ଶୋଉଥିଲେ । ପାଖ ଘରେ ଶାଶୁ ଶ୍ୱଶୁର । ତାଙ୍କ ବାହାଘର ଛ ମାସ ଆଗର ଏ କୋଠା ଘର ବଖରା ଶ୍ୱଶୁର କରାଉଥିଲେ । ଅଳ୍ପ ଦୂରରେ ଗୋଟେ ଉଠା ପାଇଖାନା, ବୋହୂକୁ ନଈ ପୋଖରୀକୁ ଯିବାକୁ ଅସୁବିଧା ହବ ବୋଲି ସେ ଆଗରୁ ସବୁ ବନ୍ଦୋବସ୍ତ କରିଥିଲେ । ସୁରମାଙ୍କ ବାପଘର କେନ୍ଦ୍ରାପଡ଼ା ପାଖ ଆରଣି ବୋଲି ଗୋଟେ ଗାଁରେ । କିନ୍ତୁ ସେମାନେ ରହୁଥିଲେ କଟକରେ । ସୁରମା କଟକରେ ମାଟ୍ରିକ୍ ପାଶ କରି କଲେଜରେ ବର୍ଷେ କଟାଇଛନ୍ତି । ସେମାନେ ତିନି ଭଉଣୀ ଭାଇ ବଡ଼ ନରେନ୍ଦ, ଗୋବିନ୍ଦ ବାବୁ ନରେନ୍ଦ୍ରଙ୍କ ବନ୍ଧୁଥିଲେ, ତାଙ୍କ ବାହାଘର ଖୋଜା ଖୋଜି ବେଳେ ନରେନ୍ଦ୍ର ଓ ତାଙ୍କ ବାପା ପ୍ରସ୍ତାବ ପକାଇ ଥିଲେ । ଶାଶୁ ଶ୍ୱଶୁର ତାଙ୍କୁ ଦେଖିବାକୁ ଯାଇ ବାହାଘର ଠିକଣା କରି ଆସିଥିଲେ । ସେ ସବୁ ଆଜିକୁ ଉଣିଶ ବର୍ଷ ତଳର କଥା । ଚାଳଘର ଦୁଇ ବଖରାରେ ଗୋଟେ ରୋଷେଇ ଘର ଆଉ ଗୋଟେ ଘର ବାହାରୁ କିଏ କେମିତି ଆସିଲେ ରହନ୍ତି । ଦୁଇ ପଟ ଘର ମଝିରେ ଛୋଟ ଅଗଣା । ଗୋଟିଏ ତୁଳସୀ ଚଉରା । ଘର ଭିତରକୁ ପଶିବା ଆଗରୁ ଦାଣ୍ଡ କଡ଼କୁ ରାଧା କୃଷ୍ଣଙ୍କ ମନ୍ଦିର । ସୁରମା ଦେବୀ ଆସିଲା ପରେ ସେ ମନ୍ଦିର କରାଇଛନ୍ତି । ଛୁତିକା ମୂର୍ତ୍ତିକାରେ ଠାକୁର ପୂଜା ଅସୁବିଧା ହୁଏ, ଅନାଦି ନନା ଘର ଭିତରକୁ ପିଶିବାକୁ ଅରାଜି ହୁଏ । ତେଣୁ ଶାଶୁ ଶ୍ୱଶୁର ଓ ସୁରମା କଥାବାର୍ତ୍ତା କରି ଦେଇ ବ୍ୟବସ୍ଥା କରିଥିଲେ । ଗୋବିନ୍ଦ ବାବୁ କେବେବି କିଛି ବୁଝନ୍ତି ନାହି, ତାଙ୍କ ଚାକିରୀ ଛଡ଼ା । ଆଜିଯାଏ ବି ସେ କିଛି ବୁଝନ୍ତି ନାହିଁ କି ବୁଝିପାରନ୍ତି ନାହିଁ ଭଗବାନଙ୍କୁ ଜଣା । ଘର ଭିତରର କେତେ ପ୍ରକାର ସମସ୍ୟା ସେ ନ ଦେଖିଲା ପରି ଚଳନ୍ତି କିନ୍ତୁ ସୁରମା ଦେବୀ ସ୍ତ୍ରୀଲୋକ । ଶ୍ୟାମଳୀର ଛାଡ଼ ଛାଡ଼ ଭାବ ତାଙ୍କୁ ମନକୁ ଆଘାତ ଦିଏ । ତା କଥାବାର୍ତ୍ତା ବ୍ୟବହାର ତାଙ୍କ ଆଖିରେ ପଡ଼େ କି ନାହିଁ କେଜାଣି କିନ୍ତୁ ସେ ସବୁ ସୁରମାଙ୍କୁ ବଡ଼ କଷ୍ଟ ଦିଏ । ତାଙ୍କ ମନ କଥା କିଛି କହିବାକୁ ଲୋକଟିଏ ବି ପାନ୍ତି ନାହିଁ । ସବୁ ଭିତରେ କି ସେ ନିଜର ସ୍ୱାଧୀନତା କେମିତି ହରାଇ ବସନ୍ତି । ସେଇସବୁ ପାଇଁ ସେ ଗାଁକୁ ଫେରି ଆସିବାକୁ ବ୍ୟସ୍ତ ହେଇ ପଡ଼ିଥିଲେ । ଗୋବିନ୍ଦବାବୁ ଆସିଥିଲେ ତାଙ୍କୁ ଆହୁରି ଭଲ ଲାଗିଥାନ୍ତା । କେଦାର ତା ସ୍ତ୍ରୀ ପୁଅ



ଆସି ପହଁଞ୍ଚିବା ପରଠୁ କେତେ ସ୍ନେହ ଆଦର ଯତ୍ନ ତାଙ୍କର ନେଉଛନ୍ତି । ଭାମା ମୁହୂର୍ତ୍ତେ ତାଙ୍କୁ ଏକୁଟିଆ ଛାଡୁନାହିଁ । ତାଙ୍କ ପାଖରୁ କ'ଣ ବା ସେମାନେ ପାଉଛନ୍ତି ? ବିଲ ଖଣ୍ଡେ ଆଉ କିଛି ବାଡ଼ି ବଗିଚା ସେଥିରୁ କି ଆୟ ହେଉଥିବ । ସୁରମା ଭାବିଲେ ସେ ନିଶ୍ଚୟ କେଦାରପୁଅର ପଢ଼ାପଢ଼ି ପାଇଁ ଯାହା ଦରକାର ପଡ଼ିବ କରିବେ । ଏ ଭଳି ଭାବୁ ଭାବୁ ସେ ଶୋଉଗଲେ, ସ୍ୱପ୍ନ ଦେଖିଲେ ସବୁ ପିଲାଙ୍କୁ ଧରି ଗୋବିନ୍ଦ ବାବୁ ଆସି ପହଁଞ୍ଚିଛନ୍ତି । ତାଙ୍କ ଉପରେ ଅଭିମାନ କରି କହୁଛନ୍ତି - ଦେଖ ତମେ ସିନା ଏକା ଆସିଥିଲ, ମୁଁ ସମସ୍ତଙ୍କୁ ସାଙ୍ଗରେ ଧରି ଆସିଛି । ଦେଖ ମାଧୁରୀ ଝିଅ ଚୁମକି କେମିତି ହେଉଛି । ଆମେ ତାଙ୍କୁ ଦେଖିବାକୁ ଗଲେନି ସିନା ସେ ଆସିଛି ତା ବାପା ମାଆଙ୍କ ସାଙ୍ଗରେ । ତମେ ଶୋଉଛ କ'ଣ ? ଉଠ ଉଠ ।

ସୁରମାଙ୍କ ନିଦ ଭାଙ୍ଗି ଗଲା । ଘଣ୍ଟାକୁ ଚାହିଁଲେ ସାଢ଼େ ଛଅଟଠା ହେବ । ଉଠିପଡ଼ିଲେ ସେ । ଦାନ୍ତ ପତ୍ର ଘସି ଚାହା କପେ ପିଇ ସେ ଭାମାକୁ କହିଲେ ତୁ ଯା ତୋ କାମରେ ଲାଗ । ମୁଁ ଯାଉଛି ମାଗୁଣି ଭାଇ, ମଦୀ ଅଜା - ବୈକୁଣ୍ଠ ପିଉସାଙ୍କ ଘର ଆଡ଼େ ମୁହଁମାରି ଆସିବି । ଡ଼େରିରେ ଗାଧେଇବି । ଆଲୋ ଭାମା - କୃଷ୍ଣ ଅଜା ଘର ଖବର କ'ଣ ? ସେ ଗାଁରେ ରହୁଛନ୍ତି ପୁଅ ବୋହୁଙ୍କ ପାଖକୁ ଗଲେଣି ? ବୁଢ଼ାଟି ଏଠି ଏକୁଟିଆ । ବେପୋ ତାଙ୍କର କିଏ ଦେଖୁଛି ? ଭାମା କହିଲେ - ମାଆ ତୁମେ ନଶୁଣିଲେ ଭଲ । ବୁଢ଼ାଟା ପନ୍ଦର ଦିନ କାଳ ବାତ ଜ୍ୱରରେ ବେହୋଶ ହେଇ ପଡ଼ିଲା । ପୁଅ ପାଖକୁ ଖବର ଗଲା । ଧନ୍ୟ କହିବ ସେ ବୋହୁକୁ, ଦିନେ ବି ଅନେଇ ଯିବାକୁ ଆସିଲା ନାହିଁ । ପୁଅ ଆସି ଏଇଠି ଡ଼ାକ୍ତର ଆଣି ଦେଖାଇ ଔଷଧପତ୍ର ଦେଇ ଚାରିଦିନ ରହିଗଲା । ମାଇପ ଡ଼ରରେ ବାପାକୁ ନବା କଥା କହିଲାନାହିଁ, କି ବାପା ବି ମଙ୍ଗିଲା ନାହିଁ । ଦିନା ଗଉଡ଼ ପୁଅକୁ ଠିକଣା କରି ରଖାଇ ଯାଇଛି । ସେଇ ବର୍ତ୍ତମାନ ରନ୍ଧାବଢ଼ା କରି ତାଙ୍କୁ ଦେଖୁଛି । ବୁଢ଼ାର ଅବଶ୍ୟ ପଇସା ପତ୍ର ଅସୁବିଧା ନାହିଁ । ଧାନ ମୁଗ ବିରି ଯାହା ମିଳେ ଜମିରୁ ବିକ୍ରି କରି ବୁଢ଼ା ଟଙ୍କା ରଖେ । ଗାଁରେ ସମସ୍ତେ ବୁଢ଼ାକୁ ଶିଖାଇ ଦେଉଛନ୍ତିଛି । ହାତରୁ ଟଙ୍କା ନଛାଡ଼ିବାକୁ, ପୁଅବି ବୋହୁର ଯେତେ ଭଜଗୁଣ ଶୁଣିନେବି ବୁଢ଼ାକୁ ପଇସା ମାଗେ ନାହିଁ । ପୁଅବି କ'ଣ କରିବ ? ମାଇପକୁ ସମ୍ଭାଳିବ ନାଁ ବାପାକୁ । ଏମିତିକା ବୋହୁ ସଂସାରରେ ନଥିବେ ମାଆ ।

ସୁରମା ଦେବୀ କହିଲେ ହଉ ତୁ ଯା । ମନୁଆର ସ୍କୁଲ ବେଳ ହେଇଯିବ, ମୁଁ ଆସୁଛି । ସୁରମା ଘର ଘର ବୁଲି ଆସିଲେ । ସମସ୍ତେ ଏତେ ବର୍ଷ ପରେ ଦେଖି ଭାରି ଖୁସି ହେଲେ, ସୁରମାଙ୍କ ଶଶୁରଙ୍କର ବଡ଼ ସନ୍‌ମାନ ଓ ଆଦର ଥିଲା । ଗୋବିନ୍ଦ ବାବୁଙ୍କୁ ମଧ୍ୟ ସମସ୍ତେ ଭଲ ପାନ୍ତି । ତାଙ୍କ ଶାଶୁ ସମସ୍ତଙ୍କ ମନ ଯାଣିଲା ପରି ସ୍ନେହ ସହାନୁଭୂତି ଦେଖାଉଥିଲେ । ସୁରମା ଏଇ ଗାଁରେ ବୋହୁ ହେଇ ଦୁଇ ତିନି ବର୍ଷ କଟାଉଛନ୍ତି । ସମସ୍ତେ ତାଙ୍କୁ ସ୍ନେହ ଶ୍ରଦ୍ଧା କରୁଥିଲେ । ତାଙ୍କ ଶାଶୁଙ୍କୁ ତାଙ୍କ ମନଲାଖି ବୋହୂଟିଏ ପାଉଛନ୍ତି ବୋଲି ପ୍ରଶଂସା କରୁଥିଲେ । ସୁରମା



ସମସ୍ତଙ୍କ ପାଖରୁ ସେଇ ଗୋଟିଏ କଥା ଶୁଣିଲେ ପୁଅ ବୋହୂ ଝିଅ ଯୋଇଁ କ'ଣ ଗାଁକୁ ଆସିବେ ନାହିଁ ? କେଉଁକାଳରୁ ଆମେ ଆଉ ତାଙ୍କୁ ଦେଖିଲୁ ନାହିଁ । ତମେ ଆସିଛ ତାଙ୍କୁ ଟିକେ ଆଣାଉ ନାହଁ । ଆମେ ଦେଖନ୍ତୁ । ତମ ପୁଅ ଝିଅ ସବୁ ବାହାଘେରା ହେଲେ ଆମେ ଟିକେ ଦେଖିଲୁ ନାହିଁ କି ଭୋଜି ଖାଇଲୁ ନାହିଁ । ତମ ଶାଶୁ ଶଶୁର ଥିଲେ କ'ଣ ଆସି ନଥାନ୍ତେ ? ଆମେ ସବୁ ଅଛୁ । ଆମେ କ'ଣ କେହି ନୋହୁଁ; ସମସ୍ତଙ୍କର ଆଦର ସ୍ନେହ ଅଭି ମାନିଆ କଥା । ସୁରମା ଦେବୀଙ୍କ ମନକୁ ଛୁଇଁ ଗଲ । ସସେ ତ । ଗାଁ ଲୋକ ସବୁ ମତେ କେତେ ଆପଣାର ଲାଗୁଛନ୍ତି । ମନରେ ଗୋଟିଏ ଭାବ ଆମ ଗାଁ ବୋହୂ କି ଝିଅ । ତାଙ୍କର ଆଉ ବି ସ୍ୱାର୍ଥ ଅଛି ଆମେ ଆସିବା ନ ଆସିବାରେ ।

ସୁରମା ତାଙ୍କ ଘରକୁ ଫେରିଲେ ପ୍ରାୟ ୧୨ଟା ପାଖାପାଖି । ଭାମା ବିରକ୍ତ ହେଲା, କହିଲା ଯାଅ ଆଗ ଗାଧେଇ ପଡ଼ । ଊହା କପେ ପିଇ ଯାଇଥିଲ, ବେଳ ଆସି କେତେ ହେଲାଣି ଦେଖିଲ । ମତେ ଆସି ପାରସ୍ତେ ଗାଳି ଦେଇ ଗଲେଣି । ତମେ କିଛି ନଖାଇ ଯାଉଛ ପୁଣି ସୁରମା ହସିଲେ କହିଲେ ଆଲୋ ହୁଣ୍ଡି ମୁଁ କ'ଣ ଛୁଆ ପିଲା ହେଉଛି ? ସକାଳ ହେଲା ମାତ୍ରେ ଜଳଖିଆ ଖାଇବି । ମୁଁ ସେଇ ଚାହା ଥରେ ଦି' ଥର ପିଉଥାଏ । ମୁଁ ଯାଉଛି ଗାଧେଇପଡ଼ି ଠାକୁରଙ୍କୁ ମୁଣ୍ଡିଆ ମାରି ଆସୁଛି । ତୁ ବଢ଼ାବଢ଼ି କର ।

ଖିଆପିଆ ସାରି ସୁରମା ଶୋଇବା ଖଟକୁ ଗଲେ ଗଡ଼ପଡ଼ ହେବାକୁ । ମଳି କହିଛି ସଂଧ୍ୟାରେ ଆସିବ ତା କାମଦାମ ସାରି । ଗାଁକୁ ଆସିବାର ଏ ଭିତରେ ଚାରିଦିନ ହେଇ ଗଲାଣି । ଗୋବିନ୍ଦ ବାବୁଙ୍କ ପାଇଁ ମନଟା ଗୁଡ଼େଇ ଗୁଡ଼େଇ ହଉଛି । ଔଷଧ ପତ୍ର ଠିକ୍ ମନେ କରି ଖାଉଛନ୍ତି କି ନାହିଁ କିଏ ଜାଣେ ? ତାଙ୍କରି କଥା ଭାବୁ ଭାବୁ ସୁରମାଙ୍କର ହଠାତ୍ ଗୋଟେ କଥା ମନେ କଡ଼ିଲା । ଜୁନ୍‌ମାସ ୨୦ତାରିଖ ତାଙ୍କର ବାହାଘର ପଚାଶ ବର୍ଷ ପୁରିବ । ସେଇ ଆଳରେ ତାଙ୍କୁ କିଛି ନଜଣାଇ ଡ଼ାକାଇଲେ କେମିତି ହୁଅନ୍ତା ? ତାଙ୍କର ତ କିଛି ମନେରହୁନି ଜୁନ୍ ୨୦ତାରିଖ କଥା ତାଙ୍କ ମନେଥିବ ? ନାଁ ବରଂ ମୋ ଦେହ ଭଲ ନାହିଁ ଲେଖିଲେ । କେବଳ ତାଙ୍କୁ କାହିଁକି ? ପ୍ରମୋଦ ସୁବୋଧ ମାଧୁରୀକୁ ବି ଲେଖିବେ । ପିଲାଙ୍କର ଖରା ଛୁଟୀ । ମାଧୁରୀ ମହା ଚାଲାକ୍ ସେ ଯାଣେ ମୁଁ ଗାଁକୁ ଆସିଛି । ସେ ନିଜ ତରଫରୁ କହିଥିଲା, ତୁ ଗଲେ ମୁଁ କିଛି ଦିନ ବୁଲି ଆସିବି । ଯା ହେଉ ସେ ଖଣ୍ଡେ ଚିଠି ଲେଖି ଦେବେ କିମ୍ବା ପୋଷ୍ଟ ଅଫିସରୁ ସୁଦାମକୁ ଫୋନ୍ କରିଦବାକୁ କହିବେ । ସେଇ ଆଳରେ ସମସ୍ତେ ଆସି ଅନ୍ତତଃ ଗାଁରେ ବୁଲି ଯିବେ । ଗାଁ ଲୋକ କେତେ ସ୍ନେହ ଆଦରରେ ସମସ୍ତଙ୍କ କଥା ପଚାରୁଥିଲେ । ମିଳାଏ ଆସିବା ଆଳରେ ଗୋଟେ ଭୋଜି କଲେବି ଚଳିବ । ସୁରମା ମନସ୍ଥିର କରି ନେଲେ । ତାଙ୍କ ଦେହ କଥା ଶୁଣି ଯଦି କେହି ନଆସନ୍ତି ଜାଣିବେ ତାଙ୍କ ପାଇଁ କାହାରି ଦରଦ ନାହିଁ । ମାଆର ଯେତିକି ସ୍ନେହ ଆଦର ପିଲାଙ୍କର ବି ସେମିତି କିଛି କର୍ତ୍ତବ୍ୟ ରହିବା ଉଚିତ । ଏମିତି ସବୁ ଚିନ୍ତା କରୁ କରୁ ସୁରମା ଦେବୀ କିଛି ସମୟ ଶୋଇଗଲେ ।



ତା ପରଦିନ ସୁଦାମ ଆସିଲା । ସୁରମା ତାଙ୍କୁ ସବୁ ବୁଝାଇ ତାଙ୍କ ପ୍ଲାନ୍ କଥା କହି ଫୋନ କରିବାକୁ କହିଲା - ମିଛ କଥା କହିବି ମାଇଁ ? ମାମୁଁ ଯଦି ବିରକ୍ତ ହେବେ, ମତେ ଡ଼ର ମାଡୁଛି । ପୁଣି ଭାଉଜ ଯଦି ଆସନ୍ତି ଦେଖନ୍ତି ସବୁ ମତେ ମିଛୁଆ କହିବେ । ତମେ ବରଂ ମାଧୁରୀକୁ ଖଣ୍ଡେ ଚିଠି ଲେଖ, ଜୁନ୍ ମାସତ ଅଛି ଦଶ ବାରଦିନ । ରଜ ଆଗରୁ ଯଦି ସମସ୍ତେ ଆସନ୍ତେ ପାଞ୍ଚ ସାତଦିନ ବୁଲି ଯାନ୍ତେ । ମୁଁ ଲଫାପା ଆଣି ଦେଉଛି ତମେ ଲେଖି ଦିଅ । ତମ ଚିଠି ପାଇଲେ ମାଧୁରୀ ସମସ୍ତଙ୍କୁ ଜଣାଇ ତମକୁ ଖବର ଦେବ । ପ୍ରମୋଦ ମଧ୍ୟ ଜଣେଇବ । ସୁରମା ଭାବିଲେ ହଁ ସତ କଥା, ସେ ବରଂ ମାଧୁରୀକୁ ଆଜି ଚିଠି ଲେଖିବେ । ସେ ସମସ୍ତଙ୍କୁ ଧରି ଆସିବ । ଆଉ ଖଣ୍ଡେ ଚିଠି ସେ ପ୍ରମୋଦକୁ ଦେବେ । ସେ ତ ଦୂରରେ ତଥାପି ଖବର ପାଇଲେ ସୁମିତ୍ରାକୁ ଧରି ଆସିବ । ଗାଁକୁ ଆସିବାକୁ ସେ ଭଲ ପାଏ । ଆଉ ଡ଼େରି ନ କରି ସେ ଚିଠି ଖଣ୍ଡ ଲେଖି ସୁଦାମକୁ ଦେଲେ ।

ତାଙ୍କ ମନର ଉତ୍କଣ୍ଠା ଥାଏ ସତରେ କ'ଣ ପିଲାଏ ଆସିବେ ? ଗୋବିନ୍ଦବାବୁ ତ ପିଲାଙ୍କଠୁ ବଳି ସେମାନେ ବାହାରିଲେବି ସେ ଆଗତୁରା ମନା କରିବେ ଖରା ବର୍ଷାର ଆଳ ଦେଖାଇ । ଭୁବନେଶ୍ୱର ସେଇ ଚାରିକାନ୍ଥ ଘର ଭିତରେ ତାଙ୍କୁ କ'ଣ ଯେ ଭଲ ଲାଗେ । ଏ କଥା ସତଲୋ ବୁଢ଼ାବୁଢ଼ୀ ହେଲାପରେ ଘର ଛାଡ଼ି ଆଉ କୁଆଡ଼େ ଯିବାକୁ ମନ ହୁଏ ନାହିଁ କିନ୍ତୁ ଏତ ନିଜ ଗାଁ ଘର, ସାହିପଡ଼ିଶା ସମସ୍ତେ ଅଛନ୍ତି । ରାତି ପାହିଲେ କିଏ ନା କିଏ ଭଲମନ୍ଦ ବୁଝିବାକୁ ପଶି ଆସୁଛନ୍ତି । ଫ୍ଲାଟ୍‌ଘର ଋରିକାନ୍ଥ ଭିତରେ କଟାଇବା ସୁରମାଙ୍କ ପାଇଁ ଅସହ୍ୟ ହେଇପଡ଼ିଥିଲା । ତାଙ୍କୁ ଲାଗୁଥିଲା ପୁଅ ବୋହୁଙ୍କ ନଜରବନ୍ଦିରେ ସେ ବନ୍ଦୀ ହେଉ ଯାଇଥିଲେ । ନିଜର ସ୍ୱାଭାବିକ ସ୍ୱାଧୀନତା ହରାଇ ବସିଥିଲେ । ଥରେ ଯଦି ଗୋବିନ୍ଦ ବାବୁ ଆସନ୍ତି ଏକାଠି ପାଣି ପବନ ଖୋଲାମେଲା ଯାଗା ସବୁ ତାଙ୍କୁ ଭଲଲାଗନ୍ତା । ଦିନ ସେତିକି ପାଖେଇ ଆସୁଛି, ତାଙ୍କ ମନର ଉତ୍କଣ୍ଠ ସେତିକି ବଢ଼ି ଯାଉଛି ।

ଜୁନ୍ ଚଉଦ ତାରିଖ ସର୍ବ ପ୍ରଥମେ ମାଧୁରୀ ଆସି ପହଞ୍ଚିଲା, ସାଙ୍ଗରେ ତାର ୩ବର୍ଷର ଝିଅ ମିଲି । ତାକୁ ଦେଖି ସୁରମାଙ୍କ ମନ ଖୁସିରେ କୁରୁଳି ଉଠିଲା । ମାଧୁରୀ କହିଲା ବୋଉ ସାନଭାଇ ଆସି ୧୬ତାରିଖରେ ପହଞ୍ଚିବ । ତା ପରେ ସେମାନେ ଏକାଠି ତୋ ଯୋଇଁ ଓ ବାପାଙ୍କୁ ନେଇ ସତର କିମ୍ବା ଅଠରରେ ପହଞ୍ଚିବେ । ଜୁନ୍ କୋଡ଼ିଏ ପୂର୍ବରୁ, ବାପା କ'ଣ କାହାର ଜୁନ୍ କୋଡ଼ିଏ କଥା ମନେ ନାହିଁ । ମୁଁ ବି କାହାକୁ କିଛି କହିନି ? କ'ଣ ସବୁ ବ୍ୟବସ୍ଥା କରିଛୁ କହିଲୁ । ସୁରମା ହିସିଲେ - କହିଲେ ଏ ବୁଢ଼ି ବୟସରେ ଆଉ କ'ଣ ଥାଏ ? ଏକାଠି ସମେସ୍ତ ଆସି ଗାଁରେ ବୁଲିଯିବେ । ଗାଁ ଲୋକ ସବୁ ତମ ବାହାଘରର ଭୋଜି ପାଇଁ କହିଲେ, ମୁଁ ଭାବିଲି ଏବେତ ରଜ ପାଇଁ ସମସ୍ତଙ୍କର ଛୁଟି ଥାଏ । ଆସିବୁଲି ଯିବେ, ସେଇ ମଉକାରେ ଖିଆପିଆ ଟିକେ କରେଇ ନବା । ତୁ କ'ଣ କହୁଛ ? ଭଲ ହବନି ?



ତୁ ଗୋଟେ ବଢ଼ିଆ କାମ କରିଛୁ ? ଗାଁକୁ ଆସିବେନି କାହିଁକି ? ତୁ ଗାଁକୁ ଆସିଛୁ ଜାଣି ମୁଁ ତ କେବେଠୁଁ ବାହାରଲିଣି, ରହ ତୁ ମୁଁ ସବୁ ବ୍ୟବସ୍ଥା ଧରି ଦଉଛି । ସୁରମା ମିଲିକୁ କାଖ କଲେ, କହିଲେ ଠିକ୍ ତୋରି ପରି ହେଲେ ଚେପଟା ନାକ, ସେ କ'ଣ ଖାଇବ କହ ମୁଁ କିଛି ଦଉଛି । ମାଧୁରୀ କହିଲା ତୁ ବ୍ୟସ୍ତ ହ ନାହିଁ ମୁଁ ସବୁ ଆଣିଛି ପରା ମୁଁ ଖାଲି ଲୁଗାପଟ ବଦଳାଇ ମୁହଁ ହାଥ ଧୋଇ ନିଏ । ସୁରମା ମିଲିକୁ କୋଳ କଲେ । କଣ୍ଢେଇଟିଏ ପରି ହେଇଛଚ ମାଧୁରୀ ଝିଅ ମୁଣ୍ଡରେ କୁଂଚୁକୁଂଚିଆ ବାଳ, ବଡ଼ ବଡ଼ ଆଖି ଦେଖିବାକୁ କୁନି ମାଧୁରୀଟିଏ ପରି ହେଉଛି କିନ୍ତୁ ରଙ୍ଗ ମାଧୁରୀ ପରି ନୁହେଁ ତା ବାପା ପରି ଶ୍ୟାମଳ । ଭାମା, ମନୁଆ ଦଉଡ଼ି ଆସିଲେ ମାଧୁରୀ ଆସି ପହଁଚିଛି ଦେଖି, ଭହା କରି ବାକୁ ସେ ଦଉଡ଼ି ଗଲା । ସୁରୁମା ମନୁଆକୁ କହିଲେ - ଆରେ ମନୁ ମୋ ବ୍ୟାଗରୁ ଟଙ୍କା ନେଇ ଦଉଡ଼ି ଗଲୁ ପାଣୁ ଦୋକାନରୁ ବରା ଆଳୁଚପ୍ ଆଣିବୁ । ବରା ସାଙ୍ଗରେ ଆଳୁଦମ୍ ବି ଆଣିବୁ । ମାଧୁରୀ ଭଲପାଏ ଆଳୁଚପ୍ ବରା, ମନୁଆ ପଇସା ଧରି ଦଉଡ଼ିଲା ।

ମାଧୁରୀ ତା ଝିଅର ଖିଆ ପିଆ ସରିଲା ଚାହା ଜଳଖିଆ ଧରି ବସିଲା । ଭାମା କହିଲା ସହରୀଝିଅ ଆମ ଗାଁ ଜଳଖିଆ ତାଙ୍କୁ ଭଲ ଲାଗିବ । ମାଧୁରୀ ହସି ହସି କହିଲା - ତୁ କ'ଣ ଜାଣିଛୁ ଭାମା ଅପା ପାଣୁ ଭାଇ ଦୋକାନ ବରା ଆଳୁଚପ୍ ଯିଏ ଖାଉଛି ଭୁଲି ପାରିବନି । ସୁଦାମ ଭାଇ ମୋ ପାଇଁ କେତେଥର ନେଇଛି ଭୁବନେଶ୍ୱର ଗଲେ । ଛୋଟ ପିଲାଙ୍କ ପରି ଗୋଡ଼ ହଲାଇ ହଲାଇ ମାଧୁରୀ ବରା ଆଳୁଚପ୍ ଖାଇ ଚାହା ପିଇଲା । କହିଲା ବୋଉ ତୁ ଏଥର ଗାଁରେ ରହ । ଭାମା ଅପା ମନୁଆ କେଦାର ଭାଇ ଅଛନ୍ତି । ସୁଦାମ ଭାଇ ତ ଅଛି । ତୋର କିଛି ଅସୁବିଧା ହେବନି । ସେଠି ଗୋଟେ ଯନ୍ତାରେ ପଶିଲା ପରି ପଡ଼ିଥିଲି । ବାପା ଯଦି ରହିବେ ରହୁଁଛନ୍ତି ରୁହନ୍ତୁ । ଯାହାକୁ ଯାହା ଭଲ ଲାଗୁଛି ସେୟା କର । ପ୍ରାୟ ଛରି ପାଞ୍ଚବର୍ଷ ପରେ ଗାଁକୁ ଆସିଦେଖିଛ ଗାଁର ଚେହେରା ବଦଳି ଯାଉଛି । ଆସିଲା ବେଳେ ଦେଖିଲି ଗୁଡ଼ାଏ ପିଲା ସ୍କୁଲ ଯାଉଛନ୍ତି ୟୁନିଫର୍ମ ପିନ୍ଧି । କିଛି ବାଟ ଆସିଲାପରେ ଦେଖିଲି ବେଶ୍ ଗୋଟେ ବଡ଼ କୋଠା ଘର । ଲେଖା ହେଉଛି ପ୍ରାଇମାରୀ ହେଲ୍‌ଥ ସେଣ୍ଟର । ଆମ ଗାଁ ତ ବେଶ୍ ବାଗେଇ ଗଲାଣି । ଭାମା ଅପାତ ଘର ଦ୍ୱାର ଏମିତି ରଖିଛି ଯେ ତମ ଭୁବନେଶ୍ୱର ଘର ବି ଏତେ ସଫା ସୁତୁରା ନଥିବା । ଆସନ୍ତୁ ତୋ ପୁଅ ବୋହୂମାନେ ଦେଖିଲେ ଆଉ ଯିବାକୁ ଚାହିଁବନି । ଆଉ ୩/୪ ଦିନ ତାଙ୍କୁ ସ୍ୱାଗତ ଜଣାଇବାକୁ ଆମେ ପ୍ରସ୍ତୁତ ହବା କହି ମାଧୁରୀ ହସି ହସି ଗଡ଼ିଗଲା - ପେଟ ପୁରିବା ପରେ ମାଧୁରୀ ଝିଅ ଶୋଇ ପଡ଼ିଲା । ତାକୁ ନେଇ ମାଧୁରୀ ବଡ଼ ଘର ପ ଲଙ୍କରେ ଶୁଆଉ ଶୁଆଉ କହିଲା - ବୋଉ ଦେଖିଲୁ କେତେ କାଳର ପଲଙ୍କ କେମିତି ନୂଆପରି ଅଛି । ଆଉ ଆଜିକାଲି କାର କାଠ ଖଟ ଆଠ ଦଶବର୍ଷରେ ଘୁଣ ଧରି ଯାଉଛି ।



# ବିଦୁଅପା

ଦଶହରା ପାଖେଇ ଆସିଲେ ଆମ ପରି ଅନାମଧେୟ ଲେଖକ ଲେଖିକାଙ୍କ ପାଖକୁ ପ୍ରକାଶକ ମାନଙ୍କ ପାଖରୁ ଖଣ୍ଡେ ଚିଠି ଆସେ । ଗଳ୍ପ କିମ୍ୱା କବିତାଟିଏ ପଠାଇବା ପାଇଁ ଅନୁରୋଧ ଥାଏ । କବିତା କଥା ଛାଡ଼ନ୍ତୁ, ଗଳ୍ପଟିଏ ଲେଖିବା ପାଇଁ କାହାଣୀଟିଏ ଦରକାର । ତାହାପୁଣି ସୁଖ ପାଠ୍ୟ ହୋଇଥିବ । ପାଠକ ପାଠିକା ପଢ଼ି ଖଣ୍ଡେ ଅଧେ ପ୍ରସଂଶାପତ୍ର ମଧ୍ୟ ପଠାଇବେ । ସବୁ କଥାକୁ ଆଖିରେ ରଖି ଗପଟିଏ ଆରମ୍ଭ କରିବା ଅନେକ ସମୟରେ ହେଇପାରେନା । ପୂଜା ସଂଖ୍ୟା ପତ୍ରିକା ସବୁ ଛପା ସରିଯାଏ ।

ଏ ବର୍ଷ ବହୁତ ମନ କରି ମୁଁ ଗୋଟିଏ ଗପ ଲେଖିବାକୁ ସ୍ଥିର କରିଛି, ଗପ ନୁହେଁ ପ୍ରାୟ ସତ ଘଟଣା କହିଲେ ହେବ । ସେଇ କାହାଣୀଟି କହେଁ । ମୋ ପିଲାଦିନର କଥା । କିନ୍ତୁ ସେ ଦିନ ଘଟଣା ଯେ ଏଇ ପନ୍ଦର ବର୍ଷ ପରେ ଏଭଳି ରୂପ ନେଇପାରେ ମୋର ଧାରଣା ନଥିଲା । ମୋର ପିଲାଦିନ ପ୍ରାୟ କଟିଛି ଗାଁରେ । ଆମ ଗାଁ କାଉପୁର । ଭଦ୍ରଖ ଷ୍ଟେସନ୍‌ରୁ ଦଶ କିଲୋମିଟର । ମୁଁ କଟକରେ ବାପାଙ୍କ ପାଖରେ ରହି ପାଠ ପଢୁଥାଏ ସତ କିନ୍ତୁ ପ୍ରତି ଖରାଛୁଟି, ଦଶହରା ଛୁଟି, ବଡ଼ଦିନଛୁଟିରେ ମୁଁ ଯାଏ ଗାଁକୁ । ମୋ ବଡ଼ମାଆ - ବଡ଼ବାପା ସମସ୍ତେ ବାପାଙ୍କ ପାଖକୁ ଚିଠି ଦେଇ ବ୍ୟସ୍ତ କରାନ୍ତି । ମୁଁ ମଧ୍ୟ ଗାଁକୁ ଯିବାକୁ ଭାରିଖୁସି ପାଏ । ମୋର ଜନ୍ମ ମଧ୍ୟ ଗାଁରେ, ତେଣୁ ମୋର ଅଧିକାଂଶ ବୟସ କଟିଛି ଗାଁରେ । ଗାଁର ସାଙ୍ଗ ସାଥିମାନେ ମତେ ଅନାଇ ବସିଥାନ୍ତି । ରଜ ପର୍ବଟା ଗାଁରେ ନ କାଟିଲେ ତାର ମହତ୍ୱ ଜଣାପଡ଼େ ନାହିଁ ।

ସେ ବର୍ଷ ରଜରେ ମୁଁ ଗାଁରେ ଥାଏ । ମହେନ୍ଦ୍ର ଭାଇର ବାହାଘର ହେଲା । ମହେନ୍ଦ୍ର ଭାଇ ଓରଫ ବାଉଭାଇ । ତାର ବାପ ମାଆ କେହି ନାହାଁନ୍ତି । ଏକୁଟିଆ, ସାବତ ଭାଇ ତାକୁ ଠକି ଉଣ୍ଡି ଅଳ୍ପ କିଛି ଜମି ଓ ଘର ବଖରାଏ ଦେଇ ଭିନ୍ନେ କରି ଦେଇଥିଲା । ଅଧିକାଂଶ ସମୟ ସେ ଆମ ଘରେ ଖିଆ ପିଆ କରେ । ଆମ ଘରେ ବୋଲ ହାକ କରେ । ବୟସ ୨୫/୨୬ ହେବ ଦେଖିବାକୁ ମନ୍ଦ ନୁହେଁ କିନ୍ତୁ ହୁଣ୍ଡାଟିଏ । ବୁଦ୍ଧି ସୁଦ୍ଧି ନାହିଁ କହିଲେ ଚଳେ ।

ତା ବାହାଘର କିଏ କେମିତି ଠିକ୍ କଲା ଜଣାନାହିଁ । ଆମ ଗାଁରୁ ସେ ଆଖଣ୍ଡଳମଣି ବୁଲିଯାଇଥିଲା, ଦୁଇଦିନ ପରେ ଫେରିଲା । ସାଙ୍ଗରେ ଗୋଟିଏ ୧୮/୧୯ବର୍ଷର ଝିଅ । ଝିଅଟି ସାମାନ୍ୟ ଗେଡ଼ା କିନ୍ତୁ ଗୋରା ବେଶ୍ ଡ଼ଉଲ, ଦେଖିଲେ ଖୁସି ଲାଗିବ ।

ବାଉଭାଇ କହିବା ଅନୁସାରେ ଝିଅଟି ମେଳାରେ ତା ପରିବାର ଠାରୁ ଅଲଗା [illegible] ସେମାନଙ୍କୁ ଖୋଜୁଥିଲା । କାହାକୁ ନପାଇ ରାତି ଅନ୍ଧାରରେ ଗୋଟେ ଗଛ ମୂଳରେ [illegible] କାନ୍ଦୁଥିଲା । ବାଉଭାଇ ତାକୁ ସାଙ୍ଗରେ ଧରି ଆଣିଛି । ବାଟରେ ତାଙ୍କର କ'ଣ କଥା [illegible] ହେଇଛି ତାହା ଭଗବାନ ଜାଣନ୍ତି । ବାଉଭାଇ ସେ ଝିଅକୁ ବାହାହବ କହୁଛି, ଝିଅ [illegible]

ମୋ ବଡ଼ବାପା ଝିଅକୁ ତା ବାପା ଘର ଠିକଣା ମଧ୍ୟ ପଚାରିଲେ, ସେ କହିଲା [illegible] ବାପା ନାହିଁ । ସାବତ ମାଆ, ମୁଁ ଦୁଇଦିନ ବାହାରେ ରହିଲିଣି । ମତେ ସେ ଆଉ ଘରେ ପୂରେଇବେ ନାହିଁ । ସେ ବି ସତ କଥା । ଅଗତ୍ୟା ମୋ ବଡ଼ ମାଆ ଓ ବଡ଼ ବାପା ଦୁହିଁଙ୍କର ବାହାଘର କରାଇ ଦେଲେ । ଝିଅଟିର ନାଁ ବିନ୍ଦୁ ।

ଏ ଘଟଣାର କିଛି ମାସ ପରେ ବାପା କଟକ ଡ଼କାଇ ବାଉଭାଇ ସପରିବାରେ ଆସି ଆମ ଘରେ କଟକରେ କିଛି ଦିନ ରହିଲେ । ତାପରେ ଗଉଡ଼ ସାହିରେ ଖଣ୍ଡେ ଘର ଭଡ଼ାକ ନି[illegible] ବାଉଭାଇ ଓ ବିନ୍ଦୁଅପା ଚାଲିଗଲେ । ଆମେ ସବୁ ପିଲାମାନଙ୍କୁ ବିନ୍ଦୁ ଅପା ଭାରି ଭଲ ଲାଗୁଥିଲା । ଭାରି ସୁନ୍ଦର ମୁଣ୍ଡ ବାନ୍ଧି ଦିଏ । ଆମକୁ ବଡ଼ ଆଦର କରେ । ଅନେକ ସମୟରେ ସ୍କୁଲ ଫେରିବା ବାଟରେ ମୁଁ ବିନ୍ଦୁଅପା ଘରକୁ ଯାଏ ।

ଦୁଇ ଚାରି ମାସ ପରେ ଦିନେ ବିନ୍ଦୁଅପା ଘରକୁ ଯାଇ ଦେଖିଲି ଦୁଇଜଣ ଲୋକ ବସିଛନ୍ତି । ବିନ୍ଦୁ ଅପା ହସି ହସି ତାଙ୍କ ସାଙ୍ଗରେ ଗପ କରୁଛି । ମୁଁ ଭିତରକୁ ନଯାଇ ଫେରି ଆସୁଥିଲି କିନ୍ତୁ ମତେ ଦେଖି ପକାଇ ସେ ଉଠି ଆସିଲା । କହିଲା - ଆସୁନୁ ବସ ପଳାଉଛୁ କାହିଁକି ? ମୁଁ କିଛି କହିବା ଆଗରୁ କହିଲା - "ସେ ଦୁଇଜଣ ବାଉଭାଇଙ୍କ ସାଙ୍ଗ । ତାକୁ ଖୋଜି ଆସିଥିଲେ । ଏବେ ପଳେଇବେ" । ମୁଁ କିନ୍ତୁ ପରେ ଆସିବି କହି ଚାଲି ଆସିଲି ।

ଆଉ ଦିନକର ଘଟଣା । କଟକରେ ବାଲିଯାତ୍ରା ଚାଲିଥାଏ । ଖରାବେଳେ ଭିଡ଼ କମ୍ ଦେଖି ବୋଉ ସାଙ୍ଗରେ ଆମେ ବାଲିଯାତ୍ରା ଯାଉଥାଉ । ଆମେ ଦେଖିବା ଆଗରୁ ବୋଉ ବିନ୍ଦୁ ଆପାକୁ ଦେଖି ଡ଼ାକିଲା । ସାଙ୍ଗରେ ଜଣେ ଭଦ୍ରଲୋକ । ସେ ପଛକୁ ରହିଗଲେ, "ବୋଉ ପଚାରିଲା ତୁ କା ସାଙ୍ଗରେ ଆସିଛୁ ? ମହେନ୍ଦ୍ର କାଇଁ ? ବିନ୍ଦୁ ଅପା ଏଣୁ ତେଣୁ ପଦେ କ'ଣ କରି ଧରା ପଡ଼ିଗଲା ପରି ପଳାଇଲା । ସେହ ଭିତରେ ବୋଉ ମୁଁ ଦେଖିଛୁ ବିନ୍ଦୁ ଅପା ଗୋଟେ ସୁନା ହାର ପିନ୍ଧିଛି ।



ସେ ଦିନ ସନ୍ଧ୍ୟା ବେଳେ ବାଉଭାଇଙ୍କୁ ଡ଼କାଇ ବୋଉ ସବୁ କ'ଣ କଥାବାର୍ତ୍ତା ହେଲା । ମୁଁ ଯଦିଓ ସବୁ ଶୁଣିପାରି ନଥିଲି ତଥାପି ବିଦୁ ଅପାକୁ ଗାଁକୁ ପଠାଇବା କଥା ନିଶ୍ଚ କିଛି କହିଛି, କାରଣ ତାର ଦୁଇ ଚାରିଦିନ ପରେ ବିଦୁ ଅପା ଗାଁକୁ ଗଲା । କିନ୍ତୁ ଆମ ଘରକୁ ଆସି କାହାରି ସହିତ ଦେଖା ମଧ୍ୟ କଲାନାହିଁ ।

ସାତ ଆଠ ଦିନ ପରେ ବାଉଭାଇ ଫେରିଲା । ପୁଣି ସେ ଆସି ଆମ ଘରେ ରହିଲା । ଛୁଟି ଦିନରେ ଲୁଚେଇ ଲୁଚେଇ ବିଦୁ ଅପା ପାଖକୁ ଚିଠି ଲେଖେ । ମୁଁ ଥରେ ଲୁଚେଇ ପଢ଼ିଥିଲି । ଲେଖିଛି " ବିଦୁହାସି ବିନା ବାଉ ବିଚରାର ଏ ସଂସାରେ ଆଉ କି ସୁଖ ଅଛି ।" ତାର ଉତ୍ତର ସେ କ'ଣ ପାଏ ମୁଁ ଜାଣେ ନାହିଁ । କିନ୍ତୁ ଏତିକି ଜାଣିଥିଲି ବିଚରା ବାଉଭାଇ ବିଦୁଅପା ପାଇଁ ସତରେ ପାଗଳ - ତାର ବି ତ ଦୁନିଆରେ କହି ନଥିଲେ ।

କିନ୍ତୁ ଭଗବାନଙ୍କର ଏ କି ବିଚିତ୍ର ଲୀଳା । ହଠାତ୍ ଗାଁରୁ ଗୋଟେ ଚିଠି ଆସି ପହଞ୍ଚିଲା ବିଦୁଅପା ଗାଁରୁ ପଳେଇଛି । ଖବର ପାଇ ବାଉଭାଇ ଗାଁକୁ ଦଉଡ଼ିଲା । ସେଇ ଯେ ଗଲା ଆଉ ଫେରିଲା ନାହିଁ । ଖବର ପହଁଞ୍ଚିଲା ବାଉ ଭାଇ ପାଗଳ ହେଇ ଯାଇଛି ଗାଁ ସାକ ବୁଲି ବୁଲି "ବିଦୁକୁ କିଏ ଦେଖିଛ କି ବୋଲି ପଚାରୁଛି," ମୁଁ ମଧ୍ୟ ତାକୁ ସେଇ ପାଗଳ ଅବସ୍ଥାରେ ଗାଁରେ ଥରେ ଦେଖିଛି । ମୋ ବଡ଼ ମାଆ ରାତିରେ ଲଣ୍ଠନ ଖଣ୍ଡେ ଧରି ତାକୁ ଖୋଜି ଖୋଜି ଗଣ୍ଡାଏ ଖୁଆଇ ଦେଇଆସେ । କେତେବେଳେ ନଈ ପଠାରେ, ମନ୍ଦିର କଡ଼ରେ କେତେବେଳେ ବା ପୋଖରୀ ହୁଡ଼ାରେ ଦରମରା ହେଇ ପଡ଼ିଥାଏ । ଦିନେ ଶୁଣିଲୁ ସେ ମରି ଯାଇଛି ।

ଏ ଭିତରେ ପ୍ରାୟ ୧୫/୧୭ ବର୍ଷ ବିତିଯାଇଛି । ବିଦୁଅପା ବାଉଭାଇ କଥା କିଏ ବା ମନେ ରଖିଛି । ସମୟ ସୁଅରେ ସବୁ ପାଶୋରି ଯାଏ । ମୋ ସ୍ୱାମୀଙ୍କ ସହିତ ମୁଁ ଥାଏ ବଲାଙ୍ଗୀରରେ । ମୋ ସାନ ଝିଅର ସ୍କୁଲ ପ୍ରାଇଜ ସେରିମନିରେ ଗୋଟେ ନାଚ ପ୍ରୋଗ୍ରାମ ଥାଏ । ସଂଧ୍ୟା ୭ଟାରେ ମୁଁ ମୋର ଜଣେ ବଂଧୁଙ୍କ ସାଙ୍ଗରେ ଆଗ ଧାଡ଼ିରେ ବସି ଗପ ସପ କରୁଥାଏ । ବଂଧୁ ଜଣକ କହିଲେ ପ୍ରାଇଜ୍ ଦେବାକୁ ପିଲାଙ୍କୁ କଲେକ୍ଟର ଆସି ନପାରିବାରୁ ସ୍ଥାନୀୟ ଏମ୍.ଏଲ୍.ଏ. ସୁରେଶ ମହାପାତ୍ର ଓ ତାଙ୍କ ସ୍ତ୍ରୀ ଆସୁଛନ୍ତି । ମୋର ଅବଶ୍ୟ କିଏ ଆସୁଛନ୍ତି ସେ ବିଷୟରେ ଆଗ୍ରହ ନଥିଲା । ଝିଅର ନାଚ ସରିଲେ ତାକୁ ଧରି ଘରକୁ ଫେରିବା କଥା । କାରଣ ତା ବାପା ଟୁରରେ ବାହାରକୁ ଯାଇଥିଲେ ।

ଏଇ ସମୟରେ ପ୍ରଧାନ ଶିକ୍ଷୟିତ୍ରୀ ଯାହାଙ୍କୁ ଧରି ଆସି ମଂଚରେ ବସାଇଲେ ତାହା ଦେଖି ମୁଁ ଚମକି ପଡ଼ିଲି । ୫୦/୫୫ ବୟସର ଜଣେ ଭଦ୍ରଲୋକଙ୍କ ସହିତ ବିଦୁ ଅପା ନା ? ନୀଳ ରଙ୍ଗର ଖଣ୍ଡେ ସମ୍ବଲପୁରୀ ପାଟ । ମୁଣ୍ଡରେ ସୁକି ଭଳି ଗୋଟେ ସିନ୍ଦୂର ଟିପା । ରଙ୍ଗ ଆହୁରି ସଫା ଆହୁରି ସୁନ୍ଦର ଦିଶୁଛି । ମୁଁ ତାକୁ ଏକଲୟରେ ଅନାଇ ରହିଲି । ସେ ମଧ ମଞ୍ଚ ଉପରୁ



ମତେ ଆଗଧାଡ଼ିରେ ଦେଖିଥିବ । ପ୍ରଧାନ ଶିକ୍ଷୟିତ୍ରୀଙ୍କ ପରିଚୟ ପର୍ବ ପରେ ସୁରେଶ ବାବୁ ଛିଡ଼ା ହେଲେ । ମୋତେ ଲାଗିଲା ତାଙ୍କ ସ୍ତ୍ରୀ ଯେମିତି ତାକୁ ଚୁପ୍ ଚୁପ୍ କିଛି କହିଲେ । ସେ ମାଇକ୍ ଧରି କହିଲେ "ଭଦ୍ରମହୋଦୟା ଓ ମହୋଦୟ ଗଣ ମୁଁ ଆପଣମାନଙ୍କର ଅଧିକ ସମୟ ନେବି ନାହିଁ । ଏ ଭଳି ଗୋଟିଏ ସଭାକୁ ଡ଼ାକିଥିବାରୁ ମୁଁ କୃତଜ୍ଞ । କିଛି ଅନିର୍ବାର୍ଯ୍ୟ କାରଣ ହେତୁ ମୁଁ ଶିକ୍ଷୟିତ୍ରୀ ମହୋଦୟାଙ୍କୁ ମୋର କାର୍ଯ୍ୟ ସମ୍ପନ୍ନ କରିବାକୁ ଅନୁରୋଧ ଜଣାଉଛି । ପିଲାଏ ତାଙ୍କ କାର୍ଯ୍ୟକ୍ରମ ଆରମ୍ଭ କରନ୍ତୁ ।

ମଂଚରୁ ଓହ୍ଲାଇ ସୁରେଶବାବୁ ସସ୍ତ୍ରୀକ ମୋ ପାଖ ଦେଇ ଗଲାବେଳେ ମୋ ପାଟିରୁ ବାହାରି ଗଲା - ବିଦୁଅପା - ମୋତେ ଲାଗିଲାତାର ଗୋଟେ ପାଦ ଯେମିତି ଅଟକି ଗଲା । କିନ୍ତୁ ତାପରେ ସେ ତର ତର ହୋଇ ସୁରେଶ ବାବୁଙ୍କ ପଛେ ପଛେ ଚାଲିଗଲେ । ମୁଁ ଭାବୁଥିଲି ପଚାରିବି - "ବିଦୁଅପା ତମେ କାହିଁକି ବାଉଭାଇ ସାଙ୍ଗରେ ଏମିତି କଲ ? କିନ୍ତୁ ସତରରେ କ'ଣ ତା ପାଖରେ ମୋ ପ୍ରଶ୍ନର କିଛି ଉତ୍ତର ଥିଲା ? ତା ପଛେ ପଛେ ଯାଇ ମୁଁ ତାଙ୍କର ଆଉ କିଛି ପ୍ରଶ୍ନ ପଚାରି ପାରିଥାନ୍ତି । କିନ୍ତୁ ଯେଉଁ ଅତୀତକୁ ପଛରେ ପକାଇ ସେ ତାର ସୁଖର ସଂସାର ବାନ୍ଧିଛି ତାକୁ ଭାଙ୍ଗି ଦେବା ପାଇଁ ମୋ ମନ ହେଲା ନାହିଁ । ଭଗବାନଙ୍କୁ ଜଣାଇଲି ଯେଉଁଠି ଥାଉ ସେ ଭଲରେ ଥାଉ ।



## ମା', ତୁ ଗଲାପରେ ...

ଭାବୁଛି କ'ଣ ଲେଖିବି ? ତୋ କଥା ମନେ ପକେଇ କଷ୍ଟରେ ଲେଖିବି ନା ତୋର ଛୋଟ ଛୋଟ ମଜା କଥା ଗୁଡ଼ିକୁ ମନେପକେଇ ଖୁସି ହେଇ ଲେଖିବି । ତୁ ଯିବାର ଅଠର ମାସ ହେଇଗଲାଣି, ହେଲେ କଷ୍ଟ ଆଜି ବି କଞ୍ଚା । ବିଶ୍ୱାସ କରି ହେଉନି ଯେ ତୁ ଏତେ ଦିନ ଆମ ଦୈନନ୍ଦିନ ଜୀବନରେ ନାହୁଁ ବୋଲି ।

ପିଲାଦିନେ ସାବତ ମାଆର ଭୟ ଦେଖାଇ ଆମକୁ ଦୁଷ୍ଟାମିରୁ ନିବୃତ କରିବାଠାରୁ, "ମୁଁ ମଲେ ହଳଦୀବସନ୍ତ ହେଇ ଆମ ଆମ୍ବ ଗଛରେ ବସି ତମକୁ ଦେଖିବି" ଭଳି କଥାରୁ ଆଜି ଅନୁଭବ କରୁଛି ଯେ ତୁ ବୋଧେ ଆମକୁ ପଗ୍ଭରୁଥିଲୁ ଯେ ମୁଁ ନ ରହିଲେ ତମେମାନେ କ'ଣ କରିବ ? ଆଜି ଆଉ ସାବତ ମାଆର ଭୟ ନାହିଁ । ତୁ ଆମ୍ବ ଗଛରେ ସତରେ ହଳଦୀବସନ୍ତ ହେଇ ବସୁଛୁ କି ନାହିଁ, ଜଣାନାହିଁ । ହେଲେ ଯେତେବେଳେ ଆମ୍ବ ଗଛରେ ବା ମୋ ଦିଲ୍ଲୀ ଘର ବାଲ୍‌କୋନିରେ ଚଢ଼େଇଟିଏ ବସୁଛି, ତା ଆଖିରେ ଆଖି ମିଶେଇ ପଗ୍ଭରିବାକୁ ଇଚ୍ଛା ହଉଚି, 'କ'ଣ ଆମକୁ ଦେଖିବାକୁ ଆସିଗଲୁ ?'

ଭଲ ଚଳଚିତ୍ର ଦେଖିବା ଓ ତାର ସଠିକ୍ ତର୍ଜମା କରିବା ତୁ ବହୁତ ଭଲ କରିପାରୁଥିଲୁ । ଏବେ ଦିନେ ତତେ ଆଉ କୁନି ମାଉସୀକୁ ଏକାଠି ବସି ଥିବାର ସପ୍ନରେ ଦେଖିଲି । ମନେ ପଡ଼ିଗଲା ଯେତେବେଳେ ମୁଁ 'ସାହେବ ବିବି ଓର୍ ଗୁଲାମ୍' ଦେଖେ, ସବୁବେଳେ ତତେ ଆସିକି କହେ ଯେ 'ଛୋଟିବୋହୂ' କୁ ଦେଖିଲେ ମୋର ସବୁବେଳେ କୁନି ମାଉସୀ କଥା ମନେପଡ଼େ । ଆରମ୍ଭ ହୁଏ ଆମର 'ପ୍ୟାସା', 'କାଗଜ କେ ଫୁଲ', 'ସୁଜାତା' ଆଉ 'ବନ୍ଦିନୀ' ର ଚର୍ଚ୍ଚା । ସେତେବେଳେ ବୁଝି ପାରୁନଥିଲି, ଏବେ କିନ୍ତୁ ବୁଝିଛି ଯେ, 'ଦେଖି ଜମାନେ କି ୟାରୀ, ବିଛଡ଼େ ସଭି ବାରି ବାରି' ର ଅର୍ଥ କ'ଣ ।

ପିଙ୍କୁ

ଛୋଟ ଗାଁ ଟିଏ କାଉପୁର, କେହି କେହି ଶୁଣିଲେ ହସି ହସି ଗଡି ଯାଆନ୍ତି । କାଉପୁର ନା ବଣିପୁର ? ଭଦ୍ରକ ଷ୍ଟେସନରୁ ଦଶ ବାର କିଲୋମିଟର ଦୂରରେ ସାଳନ୍ଦୀ ନଦୀ କୂଳରେ, ସେଇ ଗାଁରେ ୧୯୩୬ ମସିହା ଅକ୍ଟୋବର ମାସ ୨୯ ମୋ ଜନ୍ମ ।

ମୋ ବାପା ମଧୁସୂଦନ ପଟ୍ଟନାୟକ ସେ ସମୟରେ ପାଟନା ସେକ୍ରେଟାରୀଏଟ୍‌ରେ ଚାକିରୀ କରୁଥିଲେ ଓ ମୋ ବୋଉ ଗୋଦାବରୀ ପଟ୍ଟନାୟକ-ମୋ ଅନ୍ୟ ଭାଇଭଉଣୀ ମାନଙ୍କ ସହିତ ଆମେ ଗାଆଁରେ ରହୁଥାଉ । ମୁଁ ମୋ ବାପାଙ୍କର ଅତ୍ୟନ୍ତ ଗେହ୍ଲା ଥିଲି । ମୋ ଜୀବନର ସଂଗ୍ରାମ, ଦୁଃଖ, କଷ୍ଟ ସମୟରେ ଏକମାତ୍ର ଭରସା ଥିଲେ ବାପା, ଯିଏ ମୋତେ ସବୁବେଳେ ବଞ୍ଚିବା ପାଇଁ ସାହସ ଓ ବଳ ଯୋଗାଇ ଦେଉଥିଲେ । ସମୟ ସମୟରେ ମୋ' ପାଖରେ ଠିଆ ହଉଥିଲେ । ସେଥିପାଇଁ ଅନେକ ସମୟରେ ମୁଁ କହେ, "ଇନ୍ଦିରା ଗାନ୍ଧୀଙ୍କ ବାପା ତା'ପରେ ମୋ ବାପା" ।

ଭାରତ ସାଧିନ ହେଲା ପରେ ୧୯୪୯ ମସିହାରେ ଆମେ କଟକ ଆସିଲୁ ଓ ମୁଁ ବକ୍‌ଲୀ ଗାର୍ଲ୍ସ ହାଇସ୍କୁଲରେ ନାଁ ଲେଖେଇଲି । ୧୯୫୩ ମସିହାରେ ବକ୍‌ଲୀ ବାଳିକା ବିଦ୍ୟାଳୟରୁ ମାଟ୍ରିକ ପାସ୍‌କରି ଶୈଳବାଳା ଓମେନ୍‌ସ କଲେଜ୍‌ରେ ପଢ଼ିଲି । ୧୯୫୭ ମସିହାରେ ବି.ଏ ପାଶ୍ କଲି ଓ ସେଇ ବର୍ଷ ଜୁନ୍ ୨୦ ତାରିଖରେ ମୋର ବାହାଘର ହେଲା । ବାହା ହେଇ ମୁଁ ଏ'ଙ୍କ ସାଙ୍ଗରେ ଭବାନୀପାଟଣା ଗଲି । ୧୯୫୭ରୁ ୨୦୧୫ ଦୀର୍ଘ ୫୮ ବର୍ଷର ସଂସାର । ଆଉ କେତେ ଦିନ ଜଣା ନାହିଁ । କିଏ ଆଗ ହାତ ଛାଡ଼ି ଦେବ ଭଗବାନ ଜାଣନ୍ତି ।

ମୋ ଜୀବନର ଛୋଟ ଛୋଟ ଘଟଣାଗୁଡିକୁ କଥା ଆକାରରେ ଏହି ବହିରେ ଲେଖିଛି । ମୋର ବିଶ୍ୱାସ ଇଂଲିସ ମିଡିୟମ୍ ସ୍କୁଲରେ ପଢିଥିବା ମୋର ନାତି, ନାତୁଣୀ (ବାବା, ମାମୁଲୁ, ମୁନି, ଗୁଗୁଲ) ମାନେ ନିଶ୍ଚୟ ତାକୁ ଦିନେ ପଢ଼ିବେ ।

ବାସନ୍ତୀ

